# ବିଦ୍ୟାରତ୍ନ ସ୍ମରଣେ



( ୧୮୬୭ - ୧୯୨୩ )

ବିଦ୍ୟାରତ୍ନ ସ୍ମରଣୀ କମିଟି

ଓଡ଼ିଶା, କଟକ

# ବିଦ୍ୟାରତ୍ନ ସ୍ମରଣେ

## ( ହୀରକ ଜୟନ୍ତୀ ସ୍ମରଣିକା )


ପ୍ରକାଶକ

ରବି ଦାଶ

ଆବାହକ, ବିଦ୍ୟାରତ୍ନ ସ୍ମରଣ କମିଟି

ମାର୍ଫତ, ଗ୍ରାମସେବକ ସମବାୟ ପ୍ରକାଶନ ଲିଃ

ବାଖରାବାଦ, କଟକ-୭୫୩୦୦୨



ସଂପାଦକ :

ଶ୍ରୀ ପଠାଣି ପଟ୍ଟନାୟକ

କେନ୍ଦୁଝର କଲୋନୀ, କଣକା ରୋଡ୍

କଟକ-୭୫୩୦୦୧



ମୁଦ୍ରକ :

ଗ୍ରାମସେବକ ସମବାୟ ପ୍ରକାଶନ ଲିଃ

ବାଖରାବାଦ, କଟକ-୭୫୩୦୦୨

ପ୍ରକାଶ କାଳ : ୨୬ ଜୁଲାଇ ୧୯୯୮

ମୂଲ୍ୟ : ପନ୍ଦର ଟଙ୍କା ମାତ୍ର

# ବିଦ୍ୟାରତ୍ନ ସ୍ମରଣେ

ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ମୃତ୍ୟୁର ୭୫ ବର୍ଷ ପରେ ଆମ୍ଭେମାନେ ଆଜ ତାଙ୍କ ସ୍ମୃତିରେ ସ୍ମାରକ ଜୟନ୍ତୀ ସ୍ମରଣିକା ପ୍ରକାଶ କରୁଛୁ । ତାଙ୍କ ମୃତ୍ୟୁରେ ତତ୍‌କାଳୀନ ସୁନାମଧନ୍ୟ ଲେଖକମାନଙ୍କର ୭୫ ବର୍ଷ ତଳର ଦୁର୍ଲଭ ଶୋକପାଠ, ଶୋକ କବିତା, ପ୍ରବନ୍ଧ ଆଦି ଏହି ସ୍ମରଣିକାରେ ପ୍ରକାଶ କରିଅଛୁ । ସ୍ୱର୍ଗତ କବିଶେଖର ଚିନ୍ତାମଣି ମହାନ୍ତିଙ୍କ ଦ୍ୱାରା ଲିଖିତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ' ସଂକ୍ଷିପ୍ତ ଜୀବନୀ, ଏବଂ ତାଙ୍କ ମୃତ୍ୟୁରେ ଶୋକବାର୍ତ୍ତା ଓ ପଲ୍ଲିକବି ନନ୍ଦକିଶୋର ବଳଙ୍କ ଶୋକ କବିତାଟି ଏହି ସ୍ମରଣିକାକୁ ସଂପୂର୍ଣ୍ଣ ରୂପ ଦେଇ ପାରିଛି ।

ଏହି ସ୍ମରଣିକାଟି ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ଓ ଓଡ଼ିଶା ରାଜ୍ୟର ହିତ ଦୃଷ୍ଟିରୁ ଓଡ଼ିଶାର ପାଠକମାନଙ୍କ ମଧ୍ୟରେ ଆଗାମୀ କାର୍ଯ୍ୟକ୍ରମ ପାଇଁ ଆଦୃତ ହେବ ବୋଲି ବିଶ୍ୱାସ ।

୨୭ ଜୁଲଇ, ୧୯୯୮ — **ରବି ଦାଶ**

# ସୂଚୀ



———

# ଓଡ଼ିଆ ସାମ୍ବାଦିକତାର ଉଜ୍ଜ୍ୱଳ ପୁରୁଷ
# ନୀଳମଣି ବିଦ୍ୟାରତ୍ନ

— ଶ୍ରୀ ପଠାଣି ପଟ୍ଟନାୟକ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଦେଶୀୟ ଲୋକଙ୍କ ମୂଳଧନରେ ଓଡ଼ିଶା ଭୂଖଣ୍ଡରେ ମୁଦ୍ରଣ ପ୍ରେସ ପ୍ରତିଷ୍ଠା କରାଯାଇଥିଲା । ଜନଜାଗରଣ ପାଇଁ ସମ୍ବାଦପତ୍ର ହେଉଛି ଏକ ବଳିଷ୍ଠ ଓ ପ୍ରଭାବଶାଳୀ ମାଧ୍ୟମ । ତେଣୁ ଏହି କାଳରେ ଦେଶହିତୈଷୀ ନେତୃବର୍ଗ ସମ୍ବାଦପତ୍ର ପ୍ରକାଶ କରିଥିଲେ । ଚଳନ୍ତି ସମ୍ବାଦ ପ୍ରକାଶ କରି ସମ୍ପାଦକଗଣ ସନ୍ତୁଷ୍ଟ ହେଉ ନ ଥିଲେ । ସେମାନେ ବିଜ୍ଞାନ, କୃଷି, ସଂସ୍କାର ଓ ସାହିତ୍ୟର ଅଭିବୃଦ୍ଧି ଦିଗରେ ମଧ୍ୟ ଲେଖନୀ ଚାଳନା କରୁଥିଲେ । ଓଡ଼ିଶା ବୋଲି ପ୍ରଦେଶଟିଏ ନ ଥିଲା । ଓଡ଼ିଆଭାଷୀ ଅଞ୍ଚଳ ଖଣ୍ଡବିଖଣ୍ଡିତ ହୋଇ ପଡ଼ୋଶୀ ଭାଷାଭାଷୀ ପ୍ରଦେଶ ସହିତ ସଂଯୁକ୍ତ ରହିଥିଲେ । ଓଡ଼ିଶା ଭୂଖଣ୍ଡର ଉନ୍ନତି ପାଇଁ କୌଣସି ଉଲ୍ଲେଖଯୋଗ୍ୟ ପଦକ୍ଷେପ ଗ୍ରହଣ କରାଯାଉ ନ ଥିଲା । ଓଡ଼ିଆ ଭାଷାକୁ ଲୋପ କରି ତା ସ୍ଥାନରେ ବଙ୍ଗଳା, ହିନ୍ଦୀ, ତେଲୁଗୁ ଭାଷାକୁ ପ୍ରଚଳନ କରିବାପାଇଁ ପ୍ରବଳ ଚକ୍ରାନ୍ତ ଆରମ୍ଭ ହୋଇଯାଇଥିଲା । ଓଡ଼ିଆଭାଷୀ ଲୋକମାନେ ଥିଲେ ସବୁ ଅଞ୍ଚଳରେ ଅବହେଳିତ, ନିର୍ଯାତିତ ଓ ଲୁଣ୍ଠିତ । ଏହିପରି ଅର୍ଥନୈତିକ ଓ ସାଂସ୍କୃତିକ ଅବକ୍ଷୟ ଯୁଗରେ ଓଡ଼ିଆ ଜାତି ପ୍ରାଣରେ ନବ ଉନ୍ମେଷର ଧାରା ପ୍ରଚଳନ କରିଥିଲେ ସମ୍ବାଦପତ୍ରର ସମ୍ପାଦକମାନେ ଏହି ବିଚାରରେ ସେମାନେ ଥିଲେ ଜନଜୀବନର ପ୍ରକୃଷ୍ଟ ଆଲୋକ ବର୍ତ୍ତିକା ।

ଏହି ପ୍ରସଙ୍ଗରେ ଯେଉଁ କେତେଜଣ ପ୍ରାତଃସ୍ମରଣୀୟ ସମ୍ପାଦକ ଓଡ଼ିଶାର ଇତିହାସରେ ଚିରସ୍ମରଣୀୟ, ସେମାନଙ୍କ ମଧ୍ୟରେ ନୀଳମଣି ବିଦ୍ୟାରତ୍ନ ଏକ ମହୋଜ୍ଜ୍ୱଳ ପ୍ରତିଭା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି କାଳରେ 'ଦୀପିକା'ର ସମ୍ପାଦକ ଗୌରୀଶଙ୍କର ରାୟ, 'ସମ୍ବାଦ ବାହିକା'ର ସମ୍ପାଦକ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, 'ଉତ୍କଳପ୍ରଭା'ର ଗୋବିନ୍ଦଚନ୍ଦ୍ର ମହାପାତ୍ର, 'ଗଞ୍ଜାମ-ନିଉଜ'ର ଶ୍ୟାମସୁନ୍ଦର ରାଜଗୁରୁ, 'ଷ୍ଟାର ଅଫ ଉତ୍କଳ'ର କ୍ଷୀରୋଦଚନ୍ଦ୍ର ରାୟଚୌଧୁରୀ, 'ଇନ୍ଦ୍ରଧନୁ'ର ଗୋପାଳବଲ୍ଲଭ ଦାସ, 'ବିଜୁଳି'ର ଲାଲା ରାମନାରାୟଣ, 'ଉତ୍କଳ ସାହିତ୍ୟ'ର ବିଶ୍ୱନାଥ କର ପ୍ରଭୃତି ନିଜର ସମ୍ପାଦନା କ୍ଷେତ୍ରରେ ସ୍ୱନାମ-ଧନ୍ୟ ହୋଇଥିଲେହେଁ ଗୌରୀଶଙ୍କର ରାୟଙ୍କୁ ବାଦ ଦେଲେ 'ସମ୍ବଲପୁର ହିତୈଷିଣୀ'ର ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ଥିଲେ ଓଡ଼ିଆ ଜନଜାଗରଣ ମହନୀୟ ପ୍ରବକ୍ତା । ଏହି ବିରଳ ବ୍ୟକ୍ତିତ୍ୱ ଥିଲେ ଅପୂର୍ବ ଦେଶହିତୈଷୀ ଓ ସଂସ୍କାରକ । ସାମ୍ବାଦିକତା ତାଙ୍କର ପେଶା ନ ଥିଲା । ତାହା ଥିଲା ତାଙ୍କର ସାଧନା-

ପୂତ ଜୀବନର ପଥ ସତ୍ୟ ଆୟୁଧ ମାତ୍ର । ଦେଶର ଦୁର୍ଗତି ଦେଖି ସେ ବିଚଳିତ ହୋଇଥିଲେ ଏବଂ ମୃତକଳ୍ପ ଓଡ଼ିଆର ଜାତୀୟ ଜୀବନରେ ସୃଷ୍ଟି କରିଥିଲେ ନବୀନ ପ୍ରାଣସ୍ପନ୍ଦନ । ସେ ସ୍ମରଣ କରାଇ ଦେଇଥିଲେ ଯେ ଜାତିର ପ୍ରଗତି ବିନା ବ୍ୟକ୍ତିର କୌଣସି ମୂଲ୍ୟ ନାହିଁ । ଜାତୀୟ ସ୍ୱାଭିମାନ ପ୍ରତିଷ୍ଠା ନ ହେଲେ ବ୍ୟକ୍ତିର ଜୀବନ ହେବ ବିଡ଼ମ୍ବିତ ଓ ଅବହେଳିତ । ନିଜର ବଳିଷ୍ଠ ଲେଖନୀ ଚଳାଇ ଦେଶମାତୃକାର ଉଦ୍ଧାର ପାଇଁ ଅଗ୍ରସର ହୋଇଥିଲେ । ନିଜର ଲକ୍ଷ୍ୟ ହାସଲ ପାଇଁ ସେ କୌଣସି ପ୍ରତିବନ୍ଧକକୁ ସ୍ୱୀକାର କରୁ ନ ଥିଲେ । ସତ୍ୟର ପ୍ରତିଷ୍ଠା ଥିଲା ତାଙ୍କର ଜୀବନର ମହାନ ବ୍ରତ । ଲୋକ-କଲ୍ୟାଣ ପାଇଁ ସେ ଅଙ୍ଗୀକାରବଦ୍ଧ ହୋଇଥିଲେ । ସାମ୍ବାଦିକ ଭାବରେ ତାଙ୍କର ପ୍ରଧାନ ଅଭିମୁଖ୍ୟ ଥିଲା—

"ହୋଇ ଏକତ୍ରିତ ସ୍ୱର୍ଗ ଦେବଗଣ,
କରିବେ ଯଦି ମୋ ଜୀବନ ହରଣ,
ନ ଛାଡ଼ିବି ସତ୍ୟପଥ ସଦାଶୟ,
ଦେବି ନାହିଁ କେବେ ମିଥ୍ୟାକୁ ପ୍ରଶ୍ରୟ ।"

ଏହି ଆଦର୍ଶର ଅନୁରୋଧରେ ସେ ଗୋଟିଏ ପରେ ଗୋଟିଏ ପତ୍ରିକା ସମ୍ପାଦନା କରି ଓଡ଼ିଶାର ସାଂସ୍କୃତିକ ଜାଗରଣରେ ଅକ୍ଷୟ କୀର୍ତ୍ତି ଅର୍ଜନ କରି-ଯାଇଛନ୍ତି । ତାଙ୍କ ଦ୍ୱାରା ସମ୍ପାଦିତ ପତ୍ରିକା ଗୁଡ଼ିକ ହେଲା—ସମ୍ବଲପୁର ହିତୈଷିଣୀ, ପ୍ରଜାବନ୍ଧୁ, ଗଞ୍ଜାମ ଗୁଣଦର୍ପଣ, ଉତ୍କଳ ଦୀପିକା, ଉତ୍କଳ ମଧୁପ । ଆଲୋଚନା ଓ ସମ୍ବାଦ ପତ୍ରିକା ଦ୍ୱୟର ସମ୍ପାଦନାର ଅନ୍ତରାଳରେ ତାଙ୍କର ବଳିଷ୍ଠ ଭୂମିକା ମଧ୍ୟ ରହିଥିଲା ।

ସମ୍ବଲପୁର ଅଞ୍ଚଳ ବହୁକାଳ ଧରି ମଧ୍ୟପ୍ରଦେଶ କିମ୍ବା ଛୋଟନାଗପୁର ସହିତ ସଂଯୁକ୍ତ ରହି ଶାସିତ ହେଉଥିଲା । ଅଣଓଡ଼ିଆ ରାଜକର୍ମଚାରୀମାନଙ୍କ ଚକ୍ରାନ୍ତରେ ସମ୍ବଲପୁର କଚେରୀରୁ ଓଡ଼ିଆ ଭାଷା ଉଠାଇ ଦିଆଗଲା । ଓଡ଼ିଆ କର୍ମଚାରୀଙ୍କୁ ବାଧ୍ୟ କରାଗଲା ହିନ୍ଦୀଭାଷା ଶିକ୍ଷା କରିବାପାଇଁ । ଓଡ଼ିଆ ପଢ଼ାଯାଉଥିବା ପ୍ରାଥମିକ ସ୍କୁଲମାନଙ୍କୁ ଉଠାଇ ଦେଇ ହିନ୍ଦୀଶିକ୍ଷା ଦେବାପାଇଁ କାର୍ଯ୍ୟପନ୍ଥା ଗ୍ରହଣ କରାଗଲା । ଅବିକଳ ଏହିପରି ଦଶା ଭୋଗ କରୁଥିଲେ ଉପକୂଳବର୍ତ୍ତୀ ଓଡ଼ିଆମାନେ ବଙ୍ଗ ପ୍ରଦେଶରେ ଥାଇ ଏବଂ ଦକ୍ଷିଣ ଓଡ଼ିଶାର ଓଡ଼ିଆମାନେ ଅତ୍ୟାଚରିତ ହେଉଥିଲେ ମାନ୍ଦ୍ରାଜ ପ୍ରଦେଶ ଅଧୀନରେ । କଟକ, ପୁରୀ, ବାଲେଶ୍ୱର ଅଞ୍ଚଳରେ ଓଡ଼ିଆଭାଷାକୁ ରକ୍ଷା କରିବାପାଇଁ ଉତ୍କଳଦୀପିକା ଯେପରି ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଥିଲେ, ପଶ୍ଚିମ ଓଡ଼ିଶାରେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ନୀଳମଣି ବିଦ୍ୟାରତ୍ନ ଆନ୍ଦୋଳନ ଜାରି ରଖିଥିଲେ ସମ୍ବଲପୁର ହିତୈଷିଣୀ ଜରିଆରେ । ସେହିପରି ଗଞ୍ଜାମ ଅଞ୍ଚଳରେ ଓଡ଼ିଆଭାଷାର ସୁରକ୍ଷା

ମାଇଁ ନୀଳମଣି ବିଦ୍ୟାରତ୍ନ ତାଙ୍କ ସମ୍ପାଦିତ 'ପ୍ରଜାବନ୍ଧୁ' ସକ୍ରି ଭାବରେ ନେତୃତ୍ୱ ପ୍ରଦାନ କରିଥିଲେ ।

ପୂର୍ବତନ ଗଡ଼ଜାତ ପାଲଲହଡ଼ାର ମେନେଜର ଦାମୋଦର ପଟ୍ଟନାୟକ ସମ୍ବଲପୁରରେ ଭାଷା ବିଲୋପ ଆନ୍ଦୋଳନକୁ ଲକ୍ଷ୍ୟ କରି ଲେଖିଥିଲେ—

"ସମ୍ବଲପୁର ଜନନୀ ହୁଏ ଆଜି ନିର୍ବାସିନୀ
କାଲି କି ହେବ ଭବନେ ନ କରି ଗ୍ରହଣ
ଜନନୀ ରସନା ହିନ୍ଦୀ କାଟିଲ ଜାତିକ ନାଦ
ଛଟରେ ଉତ୍କଳ ଭାଇ ଯେନ ନିବେଦନ ।

( ସମ୍ବଲପୁର ହିତୈଷିଣୀ—୧୮୯୭, ପୃ ୧୭୭, )

ଭାଷା ଆନ୍ଦୋଳନକୁ ଉପଲକ୍ଷ କରି ହିତୈଷିଣୀ ବହୁ ଲେଖା ପ୍ରକାଶ କରିଥିଲା । ଏହି ସମୟରେ ହିତୈଷିଣୀ ପୃଷ୍ଠାରେ କବି ଗଙ୍ଗାଧର ମେହେର ଉତ୍କଳ ଭାରତୀଙ୍କ ରୋଦନ ( ହିତୈଷିଣୀ—୩-୧୦-୧୮୯୪ ), ଉତ୍କଳ ଭାରତୀଙ୍କ ନିବେଦନ ( ହିତୈଷିଣୀ—୭-୩-୧୮୯୫ ) ପ୍ରଭୃତି ଅନେକ ଉଦ୍‌ବୋଧନ ମୂଳକ କବିତା ଲେଖିଥିଲେ । ୩୦। ୫। ୧୮୮୯ ତାରିଖରେ ସମ୍ବଲପୁର ହିତୈଷିଣୀ ଆତ୍ମପ୍ରକାଶ କଲାପରେ ବିଦ୍ୟାରତ୍ନଙ୍କର ପ୍ରଧାନ ଲକ୍ଷ୍ୟ ହେଲା ଓଡ଼ିଆ ଜାତିକୁ ଜାଗ୍ରତ କରିବା ।

"ମାତୃଭାଷା ବିଲୋପ" ଶୀର୍ଷକ ଏକ ଅଗ୍ରଲେଖାରେ ଓଡ଼ିଆ ଭାଷାର ଜାଗ୍ରତ ପ୍ରହରୀ ନୀଳମଣି ବିଦ୍ୟାରତ୍ନ ଲେଖିଥିଲେ—ସମ୍ବଲପୁର ଜିଲ୍ଲାରୁ ଓଡ଼ିଆ ଭାଷା ହଟାଇ ଦେଇ ହିନ୍ଦୀଭାଷା ଚଳାଇବା ସକାଶେ ଉଚ୍ଚ ରାଜକର୍ମଚାରୀମାନେ ବିଶ୍ୱସ୍ତସୂତ୍ରେ ସମ୍ବାଦ ପାଇଅଛୁ । ଶୁଣାକଥା ସବୁବେଳେ ସତ୍ୟ ହୁଏ ନାହିଁ । ସତ୍ୟ ହେଲେ ମଧ୍ୟ ଦୁଃସମ୍ବାଦକୁ ବେଳକୁ ଅନେକ ସମୟରେ ଶୁଣାକଥା ସତ୍ୟ ଥିବାର ଦେଖାଯାଏ । ଆମ୍ଭେମାନେ ଯାହା ଶୁଣିଥିଲୁ, ତାହାର ସତ୍ୟତା ଉପଲବ୍ଧି କରିପାରିଅଛୁଁ । ୧୮୯୭ ସାଲ ଜାନୁଆରୀ ମାସ ୧ ତାରିଖଠାରୁ ସମ୍ବଲପୁର ଜିଲ୍ଲାର ଅଦାଲତରେ ଓଡ଼ିଆ ଭାଷା ବଦଳରେ ହିନ୍ଦୀଭାଷା ବ୍ୟବହୃତ ହେବାର ବିଜ୍ଞାପନ ପ୍ରାଦେଶିକ ଗେଜେଟରେ ପ୍ରକାଶିତ ହୋଇଅଛି, × × 'ଯାହା ହେବାର ହୋଇଅଛି'; କିନ୍ତୁ ନୀରବ ରହିବା ଉଚିତ ନୁହେଁ ,ସମ୍ବଲପୁର ଜିଲ୍ଲାର ଲୋକମାନଙ୍କର ଏ ଆଦେଶ ସମ୍ବନ୍ଧେ ଆନ୍ଦୋଳନ କରିବା ଉଚିତ··· ଏ ବିଷୟରେ ଆନ୍ଦୋଳନ ନ କଲେ ଏ ଜିଲ୍ଲାର ଓଡ଼ିଆମାନଙ୍କର କାପୁରୁଷତା-କଳଙ୍କ ଚିର ସ୍ଥିର ହୋଇ ରହିବ ଏବଂ ସେମାନେ କ୍ଷମତାପନ୍ନ ଅପର ଅପର ଜାତୀୟଲୋକଙ୍କ ନିକଟରେ ଅସାର ଅପଦାର୍ଥ ବୋଲି ବିବେଚିତ ହେବ ।

(.ସମ୍ବଲପୁର ହିତୈଷିଣୀ—ଜାନୁଆରୀ-୧୮୯୫ / ୬ଷ୍ଠଭାଗ ୩୫ ସଂଖ୍ୟା

ସମ୍ବଲପୁରରେ ଭାଷା ଆନ୍ଦୋଳନ ଚେତନା ଛଡ଼ିଲା । ଏହାକୁ ଅନବରତ ଇନ୍ଧନ ଯୋଗାଇଥିଲେ ବିଦ୍ୟାରତ୍ନଙ୍କ ଲେଖନୀପୁଷ୍ଟ ସମ୍ବଲପୁର ହିତୈଷିଣୀ ଯେଉଁ ନେତୃବର୍ଗ ସମ୍ବଲପୁର ଭାଷା ଆନ୍ଦୋଳନରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ, ସେମାନେ ହେଲେ—ମହନ୍ତବିହାରୀ ଦାସ, ଶ୍ରୀପତି ମିଶ୍ର, ଚନ୍ଦ୍ରଶେଖର ବେହେରା, ବ୍ରଜମୋହନ ପଟ୍ଟନାୟକ, ମଦନମୋହନ ମିଶ୍ର ଓ ଶଙ୍କର ପ୍ରସାଦ ପାଢ଼ୀ । ସଙ୍ଗଠନ ବିନା ଆଧୁନିକ ଯୁଗରେ କୌଣସି ଗଠନମୂଳକ କାର୍ଯ୍ୟ ସମ୍ଭବ ହୋଇ ପାରେନାହିଁ । ତେଣୁ ନିଜର ଦୀର୍ଘଜୀବନକାଳ ମଧ୍ୟରେ ସେ ପତ୍ରିକା ମାଧ୍ୟମରେ ଦେଶର ଦାବି ଯେପରି ଉପସ୍ଥାପନ କରିଛନ୍ତି, ଦେଶର ନାନା ସମସ୍ୟା ଆଲୋଚନା କରି ସେହିପରି ସେମାନଙ୍କର ଆଖି ଖୋଲିଦେଇଛନ୍ତି । ନାନାଭାବରେ ଉତ୍ସାହିତ କରିଛନ୍ତି ସାଂସ୍କୃତିକ ଓ ସେବାମୂଳକ ଅନୁଷ୍ଠାନ ଗଠନ କରିବାପାଇଁ । ଏହାଦ୍ୱାରା ସାମାଜିକ ବୁଝାମଣା ଓ ଭାଗବତ ସହୃତି ପ୍ରତିଷ୍ଠା କରାଯାଇଥାଏ । ଶିକ୍ଷିତ ବ୍ୟକ୍ତିଗଣ ଆତ୍ମସୁଖ ସାଧନରେ ରତ ରହି ଦେଶର କଲ୍ୟାଣ ପ୍ରତି ବିମୁଖ ହେଉଥିବାରୁ ସେ ବିଚଳିତ ହୋଇ ଯାଉଥିଲେ । କୁଇଜଣ ଶିକ୍ଷିତ ବ୍ୟକ୍ତିଙ୍କ ଉଦ୍ୟମରେ ସମ୍ବଲପୁରଠାରେ "ସମ୍ବଲପୁର ହିତସାଧିନୀ ନାମ୍ନୀ ଗୋଟିଏ ଅନୁଷ୍ଠାନ ଗଠନ ହୋଇଥିବାରୁ ହିତୈଷିଣୀ ଜରିଆରେ ବିଦ୍ୟାରତ୍ନ ଅଭିନନ୍ଦନ ଜଣାଇଛନ୍ତି ।

ଶିକ୍ଷିତ, ସମ୍ଭ୍ରାନ୍ତ ତଥା ଅଭିଜାତ ଲୋକମାନଙ୍କ ଭାଷାରେ କଥୋପକଥନ କରିବାକୁ ଶ୍ରେୟ ମଣିଥାଆନ୍ତି । ତଥାପି ଜନସାଧାରଣ କଥୋପକଥନ କାଳରେ ସ୍ଥାନୀୟ ବୋଲି ବ୍ୟବହାର କରନ୍ତି ଏବଂ ଗାଁଉଲି ଗୀତଗୁଡ଼ିକ ମଧ୍ୟ ଏହି ସ୍ଥାନୀୟ ବୋଲିରେରଚିତ ହୋଇଥାଏ । ନୀଳମଣି ବିଦ୍ୟାରତ୍ନ ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ କାଳରେ ଲେଖନୀ ଧାରଣ କରିଥିଲେ ଭାଷାର ଅଭିବୃଦ୍ଧି କରିବାପାଇଁ । ବହୁ ପ୍ରତିଷ୍ଠିତ ଏବଂ ନୂତନ ଲେଖକଙ୍କୁ ସାହିତ୍ୟ ସାଧନାପାଇଁ ସେ ସୁଯୋଗ ଦେଇଥିଲେ ହିତୈଷିଣୀ ପୃଷ୍ଠାରେ । କବି ରାଧାନାଥ, ମଧୁସୂଦନ ରାଓ, ବିଶ୍ୱନାଥ କର, ଚନ୍ଦ୍ରମୋହନ ମହାରଣା, ଚନ୍ଦ୍ରମଣି ମହାନ୍ତି, ଗଙ୍ଗାଧର ମେହେର ପ୍ରଭୃତି ବହୁ ଲେଖକ ହିତୈଷିଣୀ ପୃଷ୍ଠାରେ ସାରସ୍ୱତ-ପ୍ରତିଷ୍ଠା ଲାଭ କରିଥିଲେ । ସମ୍ପାଦକ ବିଶ୍ୱନାଥଙ୍କର ଆଲୋଚନା ପ୍ରବନ୍ଧଗୁଡ଼ିକରୁ ଅଧିକାଂଶ ହିତୈଷିଣୀ ପ୍ରକାଶ କରିଥିଲେ । ସେହି ପ୍ରବନ୍ଧମାନଙ୍କ ମଧ୍ୟରେ ହିତବାଦଗୀତ, ସାଧନା ଓ ସିଦ୍ଧି, ସାହିତ୍ୟଚର୍ଚ୍ଚା, ସାହିତ୍ୟ ଓ ସମାଲୋଚନା, କବିବର ଉପେନ୍ଦ୍ର ଭଞ୍ଜ, ଯୁଗଜନ, ବାଲ୍ୟଶିକ୍ଷା ପ୍ରଭୃତି ଉଲ୍ଲେଖଯୋଗ୍ୟ । ଉତ୍କଳ ଦେଶ ଓ ଉତ୍କଳ ଭାଷାର ସେବା ଥିଲା ବିଦ୍ୟାରତ୍ନଙ୍କ ଜୀବନର ପବିତ୍ର ବ୍ରତ । ଲୋକହିତ ଉଦ୍ଦେଶ୍ୟରେ ସେ ପ୍ରାୟ ପଚିଶଗୋଟି କ୍ଷୁଦ୍ର ପୁସ୍ତକ ରଚନା କରିଥିଲେ । ତାଙ୍କ ଲିଖିତ ପୁସ୍ତକ

ଗୁଡ଼ିକର ଲକ୍ଷ୍ୟ ଥିଲା ସମାଜ ସଂସ୍କାର ଏବଂ ଲୋକଶିକ୍ଷା । ସେଥିମଧ୍ୟରୁ କେତୋଟି ସ୍ମରଣ କରାଯାଇପାରେ—ବାଲବିଧବାର ଏକାଦଶୀ, ସମାଜକଳଙ୍କ, ଜିହ୍ୱାସୁଖ ଓ ଜୀବନ, ଜ୍ୱରଚିକିତ୍ସା, ମେହଚିକିତ୍ସା, ସମୁଦ୍ରଯାତ୍ରା ବିଚାର, ରାଶିଚକ୍ର ଗୋଷ୍ଠୀ, ମଦନବିନୋଦ, ସୁବର୍ଣ୍ଣଚମ୍ପା, ଉଦ୍‌ବୋଧନୀ, କୀର୍ତ୍ତିକୌମୁଦୀ, ନୀତିରତ୍ନାକର, ଶିକ୍ଷାବିନୋଦ, ନୀତିସୁଧାକର, ମଣିରତ୍ନମାଳା, ଆଖ୍ୟାନମାଳା, ଗୋବିନ୍ଦ-ମଞ୍ଜରିକାବଳି, ପ୍ରବାଦପୁଷ୍ପାଞ୍ଜଳି, କପାବୃକ୍ଷ, କଦଳୀ ବୃକ୍ଷ, ଗ୍ରାମ୍ୟସମିତି; ଜନଗଙ୍ଗା, ଗୋ ଚିକିତ୍ସା, ଚଣ୍ଡୀସଂଗ୍ରହ, ଚେରଚଣା ବୃକ୍ଷ ପ୍ରଭୃତି ।

ନୀଳମଣି ବିଦ୍ୟାରତ୍ନ ହିତୈଷିଣୀ ପୃଷ୍ଠାରେ ଅନେକ ମୂଲ୍ୟବାନ ସାହିତ୍ୟିକ ପ୍ରବନ୍ଧ ପ୍ରକାଶ କରିଥିଲେ । ସେହି ପ୍ରବନ୍ଧରୁ କେତୋଟି ହେଲା—ଅବରୋଧ ପ୍ରଥା, ପ୍ରାଚୀନ କୀର୍ତ୍ତି, ବ୍ୟୟସଙ୍କୋଚ, ଅନ୍ତଃପୁର ସଂସ୍କାର, ଗୋଧନରକ୍ଷା, ଦେଶୀୟ ବସ୍ତ୍ର ବ୍ୟବହାର, କ୍ଷତ୍ରିୟ ଜାତି, ପ୍ରଭୃତି । ଆଲୋଚ୍ୟ ପ୍ରବନ୍ଧଗୁଡ଼ିକ ପାଠକଲେ ବିଦ୍ୟାରତ୍ନଙ୍କର ପ୍ରଗତିଧର୍ମୀ ଅନୁଚିନ୍ତାର ପରିଚୟ ମିଳିଥାଏ ।

'ସମ୍ବଲପୁର ହିତୈଷିଣୀ' ସମ୍ବଲପୁର ଅଞ୍ଚଳରେ କେବଳ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷାର ଜାଗ୍ରତ ପ୍ରହରୀ ନ ଥିଲା । ସମଗ୍ର ଓଡ଼ିଆଭାଷୀ ଅଞ୍ଚଳର ହିତ କାମନା କରି ସେ ଅବିରତ ଲେଖନୀ ଚାଳନା କରି ଆସିଥିଲେ । ସମଗ୍ର ଓଡ଼ିଆଭାଷୀ ଅଞ୍ଚଳ ତାଙ୍କର କର୍ମକ୍ଷେତ୍ର ହୋଇଯାଇଥିଲା । ଗଞ୍ଜାମ ଅଞ୍ଚଳରେ ତେଲୁଗୁ ଭାଷାର ପ୍ରାଦୁର୍ଭାବ ବିଷୟରେ ସେ ଲେଖିଥିଲେ ହିତୈଷିଣୀ ପତ୍ରିକାରେ ୧୧-୧୨-୧୮୮୯ ତାରିଖରେ "ବରହମପୁର ଦକ୍ଷିଣସ୍ୱସାଧନୀ ସମାଜର ସେକ୍ରେଟାରୀ ଶ୍ରୀ ହରିହର ପଣ୍ଡା ଲେଖିଛନ୍ତି ଯେ—ଚିରକାଳରୁ ଗଞ୍ଜାମ ଜିଲାର ସମସ୍ତ କଚେରୀରେ ଲିଖନ ପଠନ କାର୍ଯ୍ୟ ଇଂରାଜୀ ଏବଂ ତେଲୁଗୁ ଅକ୍ଷରରେ ଚଳି ଆସୁଅଛି । ଏଥିରେ ଜିଲାବାସୀ ଓଡ଼ିଆମାନଙ୍କର ବିଶେଷ ଅସୁବିଧା ହେବାରୁ ଓଡ଼ିଆଭାଷା ଚଳାଇବା ନିମନ୍ତେ ଉକ୍ଳୀୟମାନେ ୧୮୭୧ ସାଲରେ ଗଭର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରି ଆଦେଶ ପାଇଥିଲେ ଯେ ଫୌଜଦାରୀ କାର୍ଯ୍ୟରେ ଓଡ଼ିଆ ଚଳି ପାରିବ । ଏ ଦେଶର ହାକିମମାନେ ତୈଲଙ୍ଗ ଥିବା ହେତୁ ସେମାନେ ନିଜର ଅସୁବିଧା ଆଡ଼କୁ ଦୃଷ୍ଟି ରଖି ଉକ୍ତ ଆଦେଶପାଳନ ନ କରିବାରୁ ଓଡ଼ିଆ-ମାନେ ନୀରବ ହୋଇ ରହିଥିଲେ ।"

"ହିତୈଷିଣୀ" [୩ୟ ଭାଗ—୨୮ ସଂଖ୍ୟା] ଗଞ୍ଜାମ ଅଞ୍ଚଳ ପାଇଁ ସାହାଯ୍ୟ କରିବାକୁ ନିବେଦନ କରିଥିଲେ । ବିଦ୍ୟାଳୟମାନଙ୍କରେ ତେଲୁଗୁ ଓ ଇଂରାଜୀ ପୁସ୍ତକ ପଠିତ ହେଉଥିବାରୁ ତେଲେଙ୍ଗାମାନେ ମାତୃଭାଷା ସହିତ ଇଂରାଜୀ ଅଧ୍ୟୟନ କରି ଉପକୃତ ହେଉଛନ୍ତି । ଓଡ଼ିଆମାନେ ଏହି ପ୍ରତିଯୋଗିତାରେ ପଛରେ ପଡ଼ିଯିବା ସ୍ୱାଭାବିକ । ମାତୃଭାଷାର ଅବନତି ଦେଖି ମଧ୍ୟ ଇଂରେଜ

ପ୍ରଶାସକମାନେ ବଧୀର ହୋଇଯାଇଛନ୍ତି । ତେଣୁ ଓଡ଼ିଆମାନେ ଆପଣା ଚେଷ୍ଟାରେ ଓଡ଼ିଆ ସ୍କୁଲ୍ ଖୋଲନ୍ତୁ ବୋଲି ବିଦ୍ୟାରତ୍ନ ନିବେଦନ କରିଥିଲେ । ଦେଶହିତୈଷୀ ରାଜା ଜମିଦାରଗଣ ଏହି କ୍ଷେତ୍ରରେ ନେତୃତ୍ୱ ଦେବେ ବୋଲି ସେ ଆଶାପୋଷଣ କରିଥିଲେ ।

ବିଦ୍ୟାରତ୍ନଙ୍କ 'ହିତୈଷିଣୀ' ବିଷୟରେ କବି ଗଙ୍ଗାଧର ମେହେର ଲେଖିଥିଲେ—

"ହେବାରୁ ସମ୍ବଲପୁର ଉନ୍ନୀଲିତ
କଷ୍ଟକୁ ନଗଣି ହେଲ ଉତ୍କଳେ ବିଦିତ ।
ହୃଦୀର ଗ୍ରାସରୁ ହେଲ କି କଷ୍ଟେ ଉଦ୍ଧାର,
ରାହୁ କବଳରୁ ସୁଧାକର ପରକାର ।

ନୀଳମଣି ବିଦ୍ୟାରତ୍ନଙ୍କ ସାଧନାକୁ ପ୍ରଣତି ଜଣାଇ ବ୍ୟାସକବି ଫକୀରମୋହନ ଲେଖିଥିଲେ 'ଉତ୍କଳ ଭ୍ରମଣ'ରେ—

"ମୋହର ବିନତି ଶୁଣ ନୀଳମଣି ନନା
ହିତୈଷିଣୀ ଲେଖିବାକୁ ନ କରିବ ମନା ।
ଏକ କାର୍ଯ୍ୟ କରି ଲଭ ପାଇବ ସକଳ,
ଧର୍ମ ଅର୍ଥ ବିଦ୍ୟା ନାମ ଚତୁର୍ବର୍ଗ ଫଳ
ତୁମ୍ଭ କଥା ତେର ଥର ପକାଏ ମୁଁ ମନେ,
ଅଛ ଏଠା Self made man
ତୁମ୍ଭେ ଜଣେ ।

ବାମଣ୍ଡା ଅବସ୍ଥାନ କାଳରେ ନୀଳମଣି ବିଦ୍ୟାରତ୍ନ ସାଧାରଣ ଜୀବନରେ ଏପରି ପ୍ରତିଷ୍ଠା ଅର୍ଜନ କରିଥିଲେ ଯେ ଗୁଣଜ୍ଞ ରାଜା ସୁଚଳଦେବ ତାଙ୍କୁ ବାମଣ୍ଡା ଷ୍ଟେଟ କାଉନସିଲର ଅବୈତନିକ ସଭ୍ୟ ଭାବରେ ମନୋନୀତ କରିଥିଲେ । ବିଦ୍ୟାରତ୍ନଙ୍କ ନେତୃତ୍ୱରେ ଦୀର୍ଘ ଷୋଳ ବର୍ଷର ରହଣି କାଳରେ ବାମଣ୍ଡା ରାଜଧାନୀ ଦେବଗଡ଼ରେ ଏକ ସାରସ୍ୱତ ଆନ୍ଦୋଳନ ସମ୍ଭବ ହୋଇଥିଲା । ପ୍ରାକୃତିକ ଓଡ଼ିଶାର ସର୍ବାଞ୍ଚଳରୁ ସାହିତ୍ୟିକମାନେ ଆମନ୍ତ୍ରିତ ହୋଇ ସମ୍ବର୍ଦ୍ଧିତ ହୋଇଥିବାର ଜଣାଯାଏ । ସେ ସେଠାରେ ପ୍ରତିଷ୍ଠା କରିଥିଲେ 'ଶିକ୍ଷକ-ସମିତି' ଓ 'ଆଲୋଚନା ସଭା' ନାମରେ ଦୁଇଟି ଅନୁଷ୍ଠାନ । ଏହି ଅନୁଷ୍ଠାନ ଦ୍ୱୟ ଉଚ୍ଚକୋଟୀର ସାହିତ୍ୟ ଆଲୋଚନା ପାଇଁ ସୁଯୋଗ ସୃଷ୍ଟି କରିଥିଲେ ।

ନାନା କାରଣରୁ ୧୯୦୬ ସାଲରେ ନୀଳମଣି ବିଦ୍ୟାରତ୍ନ ବାମଣ୍ଡା ତ୍ୟାଗ କରି ଦକ୍ଷିଣ ଓଡ଼ିଶାରେ ଖଲ୍ଲିକୋଟକୁ ନିଜର କର୍ମସ୍ଥଳୀ ରୂପେ ବାଛି ନେଇଥିଲେ । ଖଲ୍ଲିକୋଟ ରାଜାଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ ହେଲା "ପ୍ରଜାବନ୍ଧୁ" ପତ୍ରିକା । ଏହାର ସମ୍ପାଦକ ଭାବରେ ବିଦ୍ୟାରତ୍ନ ପତ୍ରିକାର ଆଭିମୁଖ୍ୟ ଘୋଷଣା କରି ଲେଖିଥିଲେ—

"ହିତ କଥା ଶୁଭ ବାର୍ତ୍ତା ସର୍ବ ସମାଚାର
କରିବ ଏ ପ୍ରଜାବନ୍ଧୁ ଉତ୍କଳେ ପ୍ରଚାର ।
ନିୟତ କାମନା କରି ସ୍ୱଦେଶର ହିତ
ରାଜାଙ୍କର ହେଉ ମନ୍ତ୍ରୀ, ପ୍ରଜାଙ୍କର ମିତ ।
ନ୍ୟାୟ ଦେବଙ୍କର କରି ନିତ୍ୟ ସେବକତା,
କରୁ ପ୍ରଜାବନ୍ଧୁ ନିଜ ନାମ ସାର୍ଥକତା ।
ହେଉ ସ୍ୱଦେଶର ଏହା ନିତ୍ୟ ଶ୍ରଦ୍ଧା ସ୍ଥଳ ।
ଜଗଦୀଶ କରନ୍ତୁ ଏ ବାସନା ସଫଳ ।

'ପ୍ରଜାବନ୍ଧୁ' ହେଲା ବିଦ୍ୟାରତ୍ନଙ୍କ ନେତୃତ୍ୱରେ ଓଡ଼ିଆମାନଙ୍କର ଜାତୀୟ ଆଶା ଅଭିଳାଷର ମୁଖପତ୍ର, ସମସ୍ତ ଆଶା ଭରସାର ସ୍ଥଳ । ଲେଖନୀ ଚାଳନା କରି ନୀଳମଣି ଦକ୍ଷିଣ ଓଡ଼ିଶାରେ ପ୍ରବଳ ଆନ୍ଦୋଳନ ଚଳାଇଲେ ଏବଂ ସୁଷୁପ୍ତ ଓଡ଼ିଆମାନଙ୍କ ମଧ୍ୟରେ ଆଣିଦେଲେ ବୈପ୍ଳବିକ ପରିବର୍ତ୍ତନ । ଗଞ୍ଜାମର ଗ୍ରାମେ ଗ୍ରାମେ ପ୍ରଜାବନ୍ଧୁ ସମିତି ଗଠନ କରାଗଲା ଏବଂ ଏହି ଅନୁଷ୍ଠାନ ଜରିଆରେ ପ୍ରଜାମାନେ ତାଙ୍କର ନ୍ୟାଯ୍ୟ ଅଧିକାର ବିଷୟରେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ ।

ଓଡ଼ିଶାରେ ବିଂଶ ଶତାବ୍ଦୀର ପ୍ରଥମ ତିନୋଟି ଦଶକକୁ ଉତ୍କଳ ସମ୍ମିଳନୀର ଯୁଗ ବୋଲି କୁହାଯାଇପାରେ । ଓଡ଼ିଶାରେ ପ୍ରଥମେ ଜାତୀୟଜୀବନର ପ୍ରାଣ ପ୍ରତିଷ୍ଠା କରିଥିଲା ଉତ୍କଳସମ୍ମିଳନୀ । ଏହି ସମ୍ମିଳନୀ ଆନୁକୂଲ୍ୟରେ ଓଡ଼ିଆ-ମାନେ ଭୟଙ୍କର ଆନ୍ଦୋଳନ କରିଥିଲେ ଏବଂ ତାହାର ଫଳଶ୍ରୁତି ହେଲା ୧୯୩୬ ଏପ୍ରିଲ ପହିଲା ଦିବସରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ଜନ୍ମ । ଅନେକେ ଜାଣନ୍ତି ନାହିଁ ଯେ ଉତ୍କଳ ସମ୍ମିଳନୀ ହେଉଛି ନୀଳମଣି ବିଦ୍ୟାରତ୍ନଙ୍କର ମାନସସନ୍ତାନ । ବିଦ୍ୟାରତ୍ନଙ୍କ ନେତୃତ୍ୱରେ ୧୯୦୩ ସାଲ ଏପ୍ରିଲ ମାସରେ ଗଞ୍ଜାମ ସମ୍ମିଳନୀର ଆୟୋଜନ କରାଯାଇଥିଲା । ଏହି ସମ୍ମିଳନୀକୁ ନିମନ୍ତ୍ରିତ ହୋଇ ଆସିଥିଲେ ମି. ମଧୁସୂଦନ ଦାସଙ୍କ ସହିତ ଓଡ଼ିଶାର ବିଭିନ୍ନ ଅଞ୍ଚଳର ନେତୃବର୍ଗ । ଏହିଠାରେ ସେମାନେ ନିଷ୍ପତ୍ତି ଗ୍ରହଣ କଲେ ଉତ୍କଳସମ୍ମିଳନୀ ମଞ୍ଚ ଉପରେ ସର୍ବାଞ୍ଚଳର ଓଡ଼ିଆମାନଙ୍କୁ ଏକାଠି କରିବା ପାଇଁ । ଉତ୍କଳସମ୍ମିଳନୀର ପ୍ରଥମ

ଅଧିବେଶନ ୧୯୦୩ ସାଲର ଡିସେମ୍ବର ମାସରେ କଟକଠାରେ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ସଭାପତିତ୍ୱ କରିଥିଲେ ମୟୂରଭଞ୍ଜର ତତ୍କାଳୀନ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ। ବିଦ୍ୟାରତ୍ନ ମୃତ୍ୟୁ ପର୍ଯ୍ୟନ୍ତ ଉତ୍କଳସମ୍ମିଳନୀର ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ଜଣାଯାଏ। କର୍ମଯୋଗୀ ଗୌରୀଶଙ୍କରଙ୍କର ମୃତ୍ୟୁପରେ ବିଖ୍ୟାତ 'ଉତ୍କଳ ଦୀପିକା'ର ସମ୍ପାଦନା ଦାୟିତ୍ୱ ପଡ଼ିଥିଲା ନୀଳମଣି ବିଦ୍ୟାରତ୍ନଙ୍କ ଉପରେ। ସେ ୧୯୧୮ରେ ସମ୍ପାଦନା ଦାୟିତ୍ୱ ଗ୍ରହଣ କରି ୧୯୨୩ ମାର୍ଚ୍ଚ ମାସରେ ଏହି ପଦ ତ୍ୟାଗ କରିବାପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ।

ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ 'ଉତ୍କଳ ମଧୁପ'ର ସ୍ଥାନ ଅବିସ୍ମରଣୀୟ। ଏହି ପତ୍ରିକାକୁ ଦୀର୍ଘକାଳ ସମ୍ପାଦନା କରି ବିଦ୍ୟାରତ୍ନ ଯଶସ୍ୱୀ ହୋଇଥିଲେ। ଏହାକୁ ପ୍ରଥମେ ବାମଣ୍ଡା ଅବସ୍ଥାନ କାଳରେ ସେ ଦେବଗଡ଼ରୁ ପ୍ରକାଶ କରିଥିଲେ। ପରବର୍ତ୍ତୀକାଳରେ ତାଙ୍କର କର୍ମକ୍ଷେତ୍ର ହେଲା ରମ୍ଭା, ବଡ଼ଖେମୁଣ୍ଡି ଓ କଟକ। ଏହି ସବୁ ସ୍ଥାନରେ ସେ ଏକକ ପ୍ରଚେଷ୍ଟାରେ ରାଜାମାନଙ୍କ ପୃଷ୍ଠପୋଷକତାରେ ଏହି ଅମୂଲ୍ୟ ପତ୍ରିକା ପ୍ରକାଶ କରି ଚାଲିଥିଲେ। ଏହି ପତ୍ରିକା ଥିଲା ଜ୍ଞାନବିଜ୍ଞାନର ଚମତ୍କାର ସଂକଳନ। 'ଉତ୍କଳ ମଧୁପ' ପରି ପତ୍ରିକାଟିଏ ଏବେ ସୁଦ୍ଧା ଓଡ଼ିଆ ଭାଷାରେ ସମ୍ଭବ ହୋଇ ନାହିଁ। ପତ୍ରିକାର ଶିରୋନାମା ତଳେ କବି ରାଧାନାଥ ରାୟଙ୍କର ପଦଟିଏ କଥା ଲିପିବଦ୍ଧ ହେଉଥିଲା ପତ୍ରିକାର ଅନ୍ତର୍ନିହିତ ସ୍ୱରୂପକୁ ପ୍ରକାଶ କରି। ତାହା ହେଲା—

"ଜ୍ଞାନର ପେଡ଼ା, ସଭିଙ୍କ ଲୋଡ଼ା,
ସଭିଏଁ ପାଇବେ ଥୋଡ଼ା ଥୋଡ଼ା।"

ବିଦ୍ୟାରତ୍ନ ହେଉଛନ୍ତି ଆମ୍ଭମାନଙ୍କ ଓଡ଼ିଆ ଜାତୀୟ ଜୀବନର ଅନ୍ୟତମ କର୍ଣ୍ଣଧାର। ତାଙ୍କର ଜାତୀୟତାବୋଧ, ସଂସ୍କାର ପ୍ରାଣତା, ସାହିତ୍ୟସେବା, ଏବଂ ସର୍ବୋପରି ପ୍ରତିଭାପୂର୍ଣ୍ଣ ସଂଭାବ ଭାଷାବଳୀ ପାଇଁ ସେ ଓଡ଼ିଶାର ସାଂସ୍କୃତିକ ଇତିହାସରେ ଅମର ହୋଇ ରହିବେ। ପୂଜ୍ୟପୂଜା-ବିସ୍ମୃତ କୌଣସି ଜାତି ଜାତୀୟ ଦରବାରରେ ସମ୍ମାନିତ ଆସନ ଲାଭ କରିପାରେ ନାହିଁ।

ବିସ୍ମୃତପ୍ରାୟ ଏହି ପ୍ରଚଣ୍ଡ ପ୍ରତିଭାସମ୍ପନ୍ନ ବ୍ୟକ୍ତିତ୍ୱ, ସଂସ୍କାରକ ଓ ବିପ୍ଳବୀ ସମ୍ପାଦକ ନୀଳମଣି ବିଦ୍ୟାରତ୍ନଙ୍କ ସ୍ମୃତିରକ୍ଷା କରି ଓଡ଼ିଆମାନେ ନିଜକୁ ଧନ୍ୟ କରନ୍ତୁ, ଏହାହିଁ କାମନା।

ଅବସର ପ୍ରାପ୍ତ ଅଧ୍ୟକ୍ଷ
କେନ୍ଦୁଝର କଲେଜ
କାନିକା ରୋଡ଼
କଟକ-୮

# ପଣ୍ଡିତ ନୀଳମଣି ବିଦ୍ୟାରତ୍ନ

କବିଶେଖର ଚିନ୍ତାମଣି ମହାନ୍ତି

ସୁସାଧକ କର୍ମପୁରୁଷମାନଙ୍କ ଜୀବନସୂତ୍ରରେ ଅନେକ ମଣିମାଣିକ୍ୟ ଗୁନ୍ଥା ହୋଇ ରହିଥାଏ, ମୃତ୍ୟୁ ପରେ ସେଥିରେ ପ୍ରଚ୍ଛନ୍ନ ଜ୍ୟୋତି ଦାଉ ଦାଉ ହୋଇଉଠେ । ବର୍ତ୍ତମାନ ଯାହାଙ୍କ ଜୀବନଚରିତ ଲେଖାହେଉଅଛି, ସେହି ଅକ୍ଳାନ୍ତକର୍ମା ସ୍ୱର୍ଗତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଉତ୍କଳର ଜଣେ ତେଜସ୍ୱୀ କର୍ମବୀର ଥିଲେ । ଶିକ୍ଷା, ସାହିତ୍ୟ, ସମ୍ବାଦପତ୍ର, କୃଷି, ଶିଳ୍ପ, ଚିକିତ୍ସା ପ୍ରଭୃତି ନାନା ବିଭାଗରେ ତାଙ୍କର କୀର୍ତ୍ତି ମୂର୍ତ୍ତିଧରି ରହିଅଛି । ତାଙ୍କର କର୍ମତାଲିକା ଦେଖିଲେ ବୋଧହୁଏ, ସତେ ଯେପରି ବିଧାତା ଉତ୍କଳୀୟ ଦେହରେ ଗୋଟାଏ ବହୁ ସାଧନାପକ୍ୱ ଉନ୍ନତ ବିଦେଶୀୟ ମସ୍ତକ ଆଣି ଯୋଡ଼ିଦେଇଥିଲି । ସେ ଗରିବ ଘରେ ଜନ୍ମଗ୍ରହଣ କରିଥିଲେ; ମାତ୍ର ତାଙ୍କର ବହୁମୁଖୀ ପ୍ରତିଭା ବଣର ମାଲତୀ ପରି ବଣରେ ଫୁଟି ବଣରେ ଝଡ଼ିପଡ଼ି ନ ଥିଲା । ଉପଯୁକ୍ତ ଗୁଣଗ୍ରାହୀଙ୍କ ଶୁଭଦୃଷ୍ଟିରେ ପଡ଼ି ସେ ପ୍ରତିଭା ଯଥେଷ୍ଟ ସୌରଭ ବିସ୍ତାର କରିଥିଲା । ବିଦ୍ୟାରତ୍ନଙ୍କ ହୃଦୟରେ ଯୌବନରେ ଦେଶ ସେବାର ଯେଉଁ ପବିତ୍ର ଆକାଙ୍‌କ୍ଷା ଜାଗ୍ରତ ହୋଇଉଠିଥିଲା, ସ୍ୱଦେଶପ୍ରାଣ ସାହିତ୍ୟରସିକ ଉତ୍କଳ-ଗୌରବ ମହାରାଜା ସୁଚଳଦେବଙ୍କ ସଂସର୍ଗରେ ତାହା ଅଧିକତର ଉଦ୍ଦୀପ୍ତ ହୋଇଉଠିଲା । ସାହିତ୍ୟ-ସେବା ପରି ଶକ୍ତ ଅଖାଡ଼ୁଆ ଜଣା ଆଉ ନାହିଁ । ବିଦ୍ୟାରତ୍ନେ ସେହି ଅମଳରେ ସାରହୋଇ ସାହିତ୍ୟ-ସେବା ତଥା ଦେଶ ସେବାରେ ଉନ୍ମତ୍ତ ହୋଇ ଉଠିଲେ । ଭବିଷ୍ୟତ୍ ସମାଲୋଚକ ତାଙ୍କୁ ଯେଉଁ ସ୍ଥାନ ପ୍ରଦାନ କରନ୍ତୁ; ମାତ୍ର ଉତ୍କଳ-ସାହିତ୍ୟର ଇତିହାସରେ ତାଙ୍କ ପାଇଁ ଗୋଟିଏ ଗୌରବମୟ ସ୍ୱତନ୍ତ୍ର ଅଧ୍ୟାୟ ରହିବ । ତାଙ୍କର ଉତ୍ସାହ-ବାରି ପାଇ ନ ଥିଲେ କେତେ ଜଣଙ୍କର ପ୍ରତିଭା ମୁକୁଳ ଅବସ୍ଥାରେ ଶୁଖିଯାଇଥାଆନ୍ତା । ଦେଶରେ ଲେଖକ ସଂଖ୍ୟା ବୃଦ୍ଧି କରିବା ତାଙ୍କର ଅନ୍ୟତମ ଲକ୍ଷ୍ୟ ଥିଲା । ସେ ସ୍ୱୟଂ ଜଣେ ଲବ୍‌ଧପ୍ରତିଷ୍ଠ ଲେଖକ ମଧ୍ୟ ଥିଲେ । ତାଙ୍କର ଭାଷା ସ୍ୱତନ୍ତ୍ର, ସେଥିରେ ପାଣ୍ଡିତ୍ୟର ଅଭିମାନ ବା ଶବ୍ଦର ଆଡ଼ମ୍ବର ନାହିଁ । ତାହା ସହଜ ସରଳ ଭାବରେ ପାଠକର ପ୍ରାଣ ଭିତରେ ପ୍ରବେଶ କରି ଆତ୍ମାକୁ ସ୍ପର୍ଶକରେ । ତାଙ୍କର ଗଦ୍ୟ ଲେଖା ପରି ପଦ୍ୟ ଲେଖା ବି ସ୍ୱତନ୍ତ୍ର । ସେଥିରେ ଇନ୍ଦ୍ରଧନୁର ମାଧୁରୀ, ପାରିଜାତର ସୁଗନ୍ଧ କିମ୍ବା କୋକିଳର କୁହୁ କୁହୁ ପଞ୍ଚମ ତାନ ନାହିଁ । ତାହା ବୈରାଗ୍ୟଗୀତିକା ପରି ଶୁଷ୍କ

ଓ ମାରଫ , କିନ୍ତୁ ତାକୁ ଘୋଷିଲେ ଚନ୍ଦନକାଷ୍ଠ ପରି ଆମୃଣୀତଳକାଷ୍ଠ ମଧୁର ସୁବାସ ମନ୍ତ୍ରକରୁଠେ ।

ନୀଳମଣି ବିଦ୍ୟାରତ୍ନ ଜଣେ ଯୋଗଜନ୍ମା ପୁରୁଷ । ଦେଶ ସକାଶେ ସର୍ବଦା ତାଙ୍କ ପ୍ରାଣ ବ୍ୟାକୁଳ ହେଉଥିଲା । ସେ ଦେଶମିଶ୍ରଣ ଆନ୍ଦୋଳନର ମୂଳଭିତ୍ତିର ମୂଳ ପଥର । ଆଜିକାଲି ଯେଉଁ ଗ୍ରାମସଂଗଠନର ଚହଳ ଉଠୁଅଛି, ବହୁଦିନ ପୂର୍ବରୁ ନୀଳମଣି ସେ ବିଷୟରେ 'ଗ୍ରାମ୍ୟସମିତି' ନାମକ ପୁସ୍ତକ ପ୍ରଚ୍ଚର କରିଯାଇଅଛନ୍ତି । ଗ୍ରାମସଙ୍ଗଠନର ସହଜ ପ୍ରଣାଳୀ ସେଥିରେ ବିସ୍ତୃତ ଭାବରେ ପ୍ରଦର୍ଶିତ ହୋଇଅଛି । ସେ କାଳର ଉତ୍ସାହ, ସେ କାଳର ଉଦ୍ୟମ, ସେ କାଳର ଏକତା ଏବେ ଦୁର୍ଲଭ ହୋଇଅଛି । ବାସ୍ତବରେ ସେ କାଳର କଥା ସ୍ମରଣ କଲେ ମନ ମଧ୍ୟରୁ ଗୋଟାଏ ବିରାଟ ଶୂନ୍ୟତା କରୁଣ ଚିତ୍କାର କରିଉଠେ ।

ବିଦ୍ୟାରତ୍ନ ବିବିଧ ବିଷୟରେ ପ୍ରାୟ ଅର୍ଦ୍ଧଶତାଧିକ ପୁସ୍ତକ ଲେଖିଯାଇ-ଅଛନ୍ତି । ଉନ୍ନତ ପ୍ରଣାଳୀର କୃଷି-ପୁସ୍ତକମାନ ସୁଲଭ ମୂଲ୍ୟରେ ପ୍ରକାଶ କରି ସେ ଦେଶର ବହୁ ଉପକାର କରିଅଛନ୍ତି । ତାଙ୍କର ଜ୍ୱରଚିକିତ୍ସା, ବସନ୍ତ ଚିକିତ୍ସା ଦେଶରେ ଖୁବ୍ ଆଦର ଲାଭ କରିଅଛି । ବିବିଧ ପୁସ୍ତକ ପତ୍ରିକାରୁ ସଂଗ୍ରହ କରି ସେ ଏହି ପୁସ୍ତକମାନ ଲେଖିଥିଲେ । ତାଙ୍କ ପ୍ରାଣ ସବୁବେଳେ ମଧୁପ ପରି ମଧୁ ସଂଗ୍ରହ କରି ବୁଲୁଥିଲା । ପୁସ୍ତକ-ପତ୍ରିକା ବା ଲୋକମୁଖରୁ କିଛି ଟିକିଏ ସାର ପାଇଲେ ସେ ତାହା ଟିପି ରଖୁଥିଲେ । ତାଙ୍କ ପରି ସାରସଂଗ୍ରହକାରୀ ଉତ୍କଳରେ କେହି ନାହାନ୍ତି ବୋଲି କହିଲେ ଅତିରଞ୍ଜିତ ହେବ ନାହିଁ । କାର୍ଯ୍ୟରେ ଲାଗିପଡ଼ିବା ଶକ୍ତି ତାଙ୍କର ଅସାଧାରଣ ଥିଲା । ସଭାସମିତିରେ କେତେକର ପ୍ରସ୍ତାବ କରିଦେଇ ସେ ନିଶ୍ଚିନ୍ତ ହେଉ ନ ଥିଲେ । ପ୍ରସ୍ତାବକୁ ଜୀବନ ଏବଂ ଆକୃତି ଦାନ କରିବା ସକାଶେ ସେ ପ୍ରାଣପଣ ଚେଷ୍ଟା କରୁଥିଲେ । ଅସାଧ୍ୟ ଉଗ୍ର ପ୍ରସ୍ତାବ ସେ କରୁ ନ ଥିଲେ । ତାଙ୍କର ବ୍ୟବହାର ଅତି ସରଳ ଓ ମଧୁର । ସେ ଶିଶୁ, ଯୁବକ, ବୃଦ୍ଧ ସମସ୍ତଙ୍କ ପ୍ରାଣରେ ସହଜରେ ମିଶିଯାଉଥିଲେ । ଉଦାର ସାଧୁ ବ୍ୟବହାର ତାଙ୍କର ଜୀବନକୁ ଅଲଙ୍କୃତ କରିଥିଲା , କିନ୍ତୁ ଦେଶକାଳପାତ୍ର ଦୃଷ୍ଟିରେ ଯେଉଁଠାରେ ଔଦ୍ଧତ୍ୟର ଆବଶ୍ୟକତା ବୁଝୁଥିଲେ, ସେଠାରେ ସେ ଟାଣଲୋକକୁ ଟାଣପାଣି ଦେବାକୁ କୁଣ୍ଠିତ ହେଉ ନ ଥିଲେ । ନୈତିକ ସାହସ ଓ ସ୍ପଷ୍ଟବାଦିତା ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ପ୍ରିୟ ସହଚର ଥିଲା । କୌତୁକ ସ୍ପୃହା ମାନବର ସ୍ୱାଭାବିକ । ବିଦ୍ୟାରତ୍ନେ ନିର୍ଦ୍ଦୋଷ ଆମୋଦ ବା କୌତୁକକୁ ଖୁବ୍ ସୁଖ ମଣୁଥିଲେ ।

ବିଦ୍ୟାରତ୍ନଙ୍କର ଧର୍ମଗତ ନିରୂପଣ କରିବା ସହଜ ନୁହେଁ । ସେ କାହାକୁ ସ୍ୱଧର୍ମ ବୋଲି ପ୍ରଶଂସା ବା ପରଧର୍ମ ବୋଲି ନିନ୍ଦା କରନ୍ତି ନାହିଁ । ବାସ୍ତବରେ

ଯେଉଁମାନେ-ଏହିପରି ସମଦର୍ଶୀ, ସେହିମାନେହିଁ ପ୍ରକୃତ ଧର୍ମଜ୍ଞ ଓ ଧାର୍ମିକ। ନିଜର ବିବେକ ନିଜକୁ ଯାହା ଶିକ୍ଷା ଦିଏ, ତାହା ଏକା ଧର୍ମ।

ବିଦ୍ୟାରତ୍ନଙ୍କ ଗୁପ୍ତଦାନ କଥା ତାଙ୍କର କେହି କେହି ଅନ୍ତରଙ୍ଗ ବନ୍ଧୁ କହି ପ୍ରଶଂସା କରନ୍ତି। ପ୍ରକୃତରେ ତାଙ୍କର ଦକ୍ଷିଣ ହସ୍ତର କାର୍ଯ୍ୟ ବାମ ହସ୍ତ ଜାଣିପାରେ ନାହିଁ। ଦାନ କରିବା ବେଳେ ସେ ନିଜର ଅବସ୍ଥା ଓ ପାତ୍ରାପାତ୍ର ଭୁଲିଯାଆନ୍ତି। ବିପନ୍ନ ଦେଖିଲେ ସେ ସ୍ୱତଃପ୍ରବୃତ୍ତ ହୋଇ ଦାନ କରନ୍ତି। ରାସ୍ତାରେ ଥିବାବେଳେ ସେ ବିପନ୍ନ ବା ଅର୍ଥଶୂନ୍ୟ ବ୍ୟକ୍ତିଙ୍କୁ ଆଦରପୂର୍ବକ ଡାକିଆଣି ନିଜ ବସାରେ ଖୁଆଇ ରେଲଖର୍ଚ୍ଚ ଦେଇ ବିଦାୟ କରିଥିବା ଅନେକେ ଜାଣନ୍ତି। ଦିନେ ଜଣେ ଭଦ୍ରବଂଶୀୟ ଯୁବକ ଗୋଟିଏ ଭଦ୍ରବଂଶୀୟା ସ୍ତ୍ରୀକୁ ନେଇ ରାସ୍ତା ଛତ୍ରଘରେ ଆସି ଆଶ୍ରୟ ନେଲେ। ଉଭୟେ ଶୂନ୍ୟହସ୍ତ, ଅଧିକନ୍ତୁ ସ୍ତ୍ରୀଲୋକଟି ଅନ୍ତଃସତ୍ତ୍ୱା। ଏହି ଲଜ୍ଜା ଲୁଚାଇବା ପାଇଁ ରସିକରସିକା ଦୁହେଁ ପ୍ରେମସନ୍ନ୍ୟାସ ଗ୍ରହଣ କରି ବୁଲୁଅଛନ୍ତି। ଦୁଇଦିନ ନିର୍ଜଳା ଉପବାସ ପରେ ସ୍ତ୍ରୀଲୋକଟି ଅଶକ୍ତ ହୋଇପଡ଼ିଲା। ବିଦ୍ୟାରତ୍ନେ ଛତ୍ରଘର ହାଣ୍ଡିଆଣୀଠାରୁ ଏ ସମ୍ବାଦ ଶୁଣିଲେ। ଆଉ କେହି ହୋଇଥିଲେ ପାପଗର୍ଭ କଥା ଶୁଣି ଘୃଣାରେ ନାସିକାକୁଞ୍ଚନ କରିଥାନ୍ତା, ମାତ୍ର ବିଦ୍ୟାରତ୍ନେ ମନରେ କିଛି ନ ବିଚାରି କେବଳ ସେମାନଙ୍କୁ ବିପନ୍ନ ଜାଣି ସାହାଯ୍ୟ କରିବାକୁ ପ୍ରବୃତ୍ତ ହେଲେ। ସେହିକ୍ଷଣି ଛତ୍ରଘରକୁ ସେପାଇର ସଞ୍ଜା ପଠାଗଲା। ଜଣେ ଅପରିଚିତର ଏଭଳି ସହାନୁଭୂତି ଦେଖି ସ୍ତ୍ରୀଲୋକଟି କାନ୍ଦିପକାଇ କହିଲା—"ଏତେ ଦୟା ମନୁଷ୍ୟର ହୋଇପାରେ ନାହିଁ, ବିଦ୍ୟାରତ୍ନ ନିଶ୍ଚୟ ଦେବତା।" ତହିଁ ପର ଦିନ ସେମାନଙ୍କୁ ଦୁଇଖଣ୍ଡ ଲୁଗା ଏବଂ ରେଲଖର୍ଚ୍ଚ ଦେଇ ସେମାନଙ୍କ ଇଚ୍ଛାନୁସାରେ ପୁରୀ ପଠାଇଦିଆଗଲା। ହଠାତ୍ ପୁରୀରେ ପହଞ୍ଚି କାଳେ ହତାଶ ହୋଇପଡ଼ିବେ, ସେଥିପାଇଁ କିଛି ହାତଖର୍ଚ୍ଚ ମଧ୍ୟ ଦିଆଗଲା। ତାଙ୍କ ଜୀବନରେ ଏହିପରି ଦୟା-ଦାକ୍ଷିଣ୍ୟର ଘଟଣା ଅନେକ ଅଛି, ସେ ସବୁ ଲେଖିଲେ ଖଣ୍ଡିଏ ପୁସ୍ତକ ହେବ। ସ୍ଥୂଳତଃ ତାଙ୍କ ହୃଦୟ ଦୟାରେ ଉର୍ବର ଏବଂ ଦାନରେ ସରଳ ଥିଲା। ସମୟର ସଦ୍‌ବ୍ୟବହାରରେ ସେ ଖୁବ୍ ଜାଗ୍ରତ ଥିଲେ। ନିତ୍ୟକର୍ମାଦିରେ ତାଙ୍କର ଅତି ଅଳ୍ପମାତ୍ର ସମୟ ବ୍ୟୟିତ ହୁଏ। ଅବଶିଷ୍ଟ ସମୟ ଲେଖାପଢ଼ା ଓ ସଦାଲାପରେ ଅତିବାହିତ ହୁଏ। ତାଙ୍କର ଜୀବନ ସର୍ବଦା କର୍ତ୍ତବ୍ୟରେ ଖଟି ରହିଥାଏ।

ସୌରିଚରଣଙ୍କର ଜ୍ୟେଷ୍ଠପୁତ୍ର ନୀଳମଣି ଓଡ଼ିଶାର ଭୟାବହ ନଅଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ ଅର୍ଥାତ୍ ୧୮୬୭ ମସିହା ଡିସେମ୍ବର ୧୪ ତାରିଖରେ ଜନ୍ମଗ୍ରହଣ କରିଥିଲେ। କଟକ ଜିଲ୍ଲା ଅନ୍ତର୍ଗତ ବାଙ୍କି ନୀଳମଣିଙ୍କର ଜନ୍ମଭୂମି। ତାଙ୍କର ମାତାଙ୍କ ନାମ ରୋହିଣୀ ଦେବୀ। ସୌରିଚରଣ ମିଶ୍ର କର୍ମକାଣ୍ଡ ଓ

ଧର୍ମଶାସ୍ତ୍ରରେ ଉତ୍ତମ ଯୋଗ୍ୟତା ଲାଭ କରିଥିଲେ । ପିତାମାତା ପୁତ୍ରର ଶ୍ୟାମଳ କାନ୍ତି ନିରୀକ୍ଷଣ କରି ତାଙ୍କୁ ନୀଳମଣି ନାମରେ ଅଭିହିତ କଲେ । ବାଙ୍କିରେ ସେତେବେଳେ ସ୍କୁଲ ନ ଥିବାରୁ ସେ ଗ୍ରାମ୍ୟପାଠଶାଳାରେ ପ୍ରାଥମିକ ଶିକ୍ଷା ଲାଭ କରିଥିଲେ । ନୀଳମଣି ପାଠଶାଳାର ପାଠ ଶେଷ କରି ବୈଦ୍ୟେଶ୍ୱର ପ୍ରାଇମେରୀ ସ୍କୁଲରେ ଯାଇ ପଢ଼ିଲେ । ସେ ନିଜର ପ୍ରତିଭା, ଅଧ୍ୟବସାୟ, ସୁଶୀଳତା ଓ ନିରହଙ୍କାର ସ୍ୱଭାବଦ୍ୱାରା କି ଶିକ୍ଷକ, କି ସହାଧ୍ୟାୟୀ ସମସ୍ତଙ୍କର ପ୍ରିୟପାତ୍ର ହୋଇ-ଉଠିଲେ । ସେ ବର୍ଷକୁ ବର୍ଷ ଗୋଟିଏ ଗୋଟିଏ ଶ୍ରେଣୀରୁ ଉନ୍ନୀତ ହୋଇ ଉଚ୍ଚ ଶ୍ରେଣୀରେ ଉପସ୍ଥିତ ହେଲେ । ସେ ପଢ଼ିବାବେଳେ ସାହିତ୍ୟରେ ଅନ୍ୟାନ୍ୟ ଛାତ୍ରଙ୍କ ତୁଳନାରେ ତାଙ୍କର ଅସାଧାରଣ ଶକ୍ତିମତ୍ତା ଦେଖି ତାଙ୍କର ଅଧ୍ୟାପକ ବିଦ୍ୟାଧର ଦାଶ ପରମ ପରିତୋଷ ଲାଭ କରିଥିଲେ । ସେ ୧୮୮୦ ମସିହାରେ ବୈଦ୍ୟେଶ୍ୱର ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ମାସିକ ତିନିଟଙ୍କା ଲେଖାଏ ଉଚ୍ଚ-ପ୍ରାଇମେରୀ ବୃତ୍ତି ପାଇଲେ । ତତ୍ପରେ ଚର୍ଚ୍ଚିକା ମିଡ଼ଲ ଭର୍ଣ୍ଣାକୁଲର ସ୍କୁଲରେ ପ୍ରବେଶ ହେଲେ । ସେଠାରେ ପାଠ୍ୟପୁସ୍ତକ ବ୍ୟତୀତ ସେ ସ୍କୁଲ ଲାଇବ୍ରେରୀରୁ ବଙ୍ଗଳା ଓ ଓଡ଼ିଆ ପୁସ୍ତକ ନେଇ ପାଠ କରୁଥିଲେ । ସେ ସମୟରେ ବାହାରୁଥିବା ଓଡ଼ିଆ ଓ ବଙ୍ଗଳାଭାଷାର ସାପ୍ତାହିକ ଓ ମାସିକ ପତ୍ରିକା ଯେତେ-ବେଳେ ଯାହା ପାଉଥିଲେ, ତାହା ମନୋଯୋଗ ସହକାରେ ପଠନ କରୁଥିଲେ । କୈଶୋରାବସ୍ଥାରୁ ତାଙ୍କର ଅଧ୍ୟୟନରେ ଏପରି ଅନୁରାଗ ଥିଲା ଯେ, ସେ ତୈଳାଭାବ ହେଲେ ଅନେକ ସମୟରେ ଚନ୍ଦ୍ରାଲୋକରେ ବସି ଗ୍ରନ୍ଥ ପାଠ କରୁଥିଲେ ।

ସେ ଚର୍ଚ୍ଚିକାରେ ନିଜେ ରନ୍ଧନ କରି ଖାଇଲେ ଶିକ୍ଷାରେ ବ୍ୟାଘାତ ହେବ ବୋଲି ତାଙ୍କର ପିତା ସ୍କୁଲ ଇନ୍‌ସପେକଟିଙ୍ଗ୍ ପଣ୍ଡିତ ରାମଚନ୍ଦ୍ର ମିଶ୍ରଙ୍କ ଘରେ ଖାଦ୍ୟର ବ୍ୟବସ୍ଥା କରିଦେଲେ । ସ୍କୁଲକୁ ଯିବା ସମୟକୁ ରୋଷାଇ ଶେଷ ହୋଇ ନ ଥିଲେ, କେବେ କେବେ ପଇସାକର ମୁଢ଼ି, କେବେ ବା କେବଳ ଜଳପାନ କରି ସ୍କୁଲକୁ ଯାଉଥିଲେ । ମାସ ମଧ୍ୟରେ ୭-୮ ଦିନ ସେ ଏହିପରି ସମସ୍ତ ଦିବସ ଉପବାସରେ ରହି ସ୍କୁଲକୁ ଯାଉଥିଲେ । ଏହି ସମୟରେ ସ୍ଥାନୀୟ ସବ୍‌ରେଜିଷ୍ଟ୍ରାର ଅଫିସର ଦଲିଲ ଲେଖକଙ୍କ ସଙ୍ଗେ ତାଙ୍କର ସହୃଦୟତା ଜାତ ହୋଇଥିଲା । ନୀଳମଣିଙ୍କ ହସ୍ତଲିପିଗୁଡ଼ିକ ସୁନ୍ଦର ଥିବାରୁ ସେ ବେଳେ ବେଳେ ଦଲିଲ ଦରଖାସ୍ତ ପ୍ରଭୃତି ଲେଖି କିଛି କିଛି ଉପାର୍ଜନ କରୁଥିଲେ ଏବଂ ସେହି ଅର୍ଥକୁ ବ୍ୟୟ ନ କରି ଭବିଷ୍ୟତ ଶିକ୍ଷା ଉଦ୍ଦେଶ୍ୟରେ ସେଭିଙ୍ଗ୍‌ସ ବ୍ୟାଙ୍କରେ ଜମା କରି ରଖୁଥିଲେ ।

୧୮୮୬ ମସିହାରେ ସେ ଚର୍ଚ୍ଚିକା ମି. ଭ. ସ୍କୁଲରୁ ଦ୍ୱିତୀୟ ବିଭାଗରେ ଉତ୍ତୀର୍ଣ୍ଣ ହୋଇ କଟକ ନର୍ମାଲସ୍କୁଲରେ ପଢ଼ିବା ଉଦ୍ଦେଶ୍ୟରେ ପୂର୍ବସଞ୍ଚିତ ଅର୍ଥତକ

ସମ୍ବଳ କରି କଟକକୁ ଆସି ବାଙ୍କିର ସ୍ୱନାମଧନ୍ୟ ପଣ୍ଡିତ ଗୋବିନ୍ଦ ରଥଙ୍କ ବସାରେ ରହିଲେ । ନର୍ମାଲସ୍କୁଲର ସୁପରିଣ୍ଟେଣ୍ଡେଣ୍ଟ ବାବୁ ଦ୍ୱାରକାନାଥ ଚକ୍ରବର୍ତ୍ତୀଙ୍କ ସଙ୍ଗେ ନୀଳମଣି ସାକ୍ଷାତ୍ କରି ଅଧ୍ୟୟନ କଥା କହିବାରୁ ସେ କହିଲେ—ତୁମ୍ଭେ ଛଅମାସ ସ୍ୱବ୍ୟୟରେ ପଢ଼ିବା ପରେ ସରକାରୀ ବୃତ୍ତି ମିଳିବ । ତହୁଁ ନୀଳମଣି ଗୋବିନ୍ଦ ରଥଙ୍କ ସାହାଯ୍ୟରେ ଟ୍ରେନିଙ୍ଗ୍ ସ୍କୁଲ ପାଠ୍ୟପୁସ୍ତକମାନ ଏବଂ ଅନ୍ୟାନ୍ୟ ପୁସ୍ତକ ଅଧ୍ୟୟନ କଲେ । ନୀଳମଣି ଘରେ କାହାରିକୁ କିଛି ନ କହି ମାଆଙ୍କଠାରୁ ପୁସ୍ତକ କିଣିବା ଛଳନାରେ ଛଅଅଣା ମାତ୍ର ପଇସା ନେଇ କଟକ ବାହାରି ଆସିଥିଲେ । ପିତାମାତା ଏହା ଜାଣି ନ ଥିବାରୁ ବହୁତ ଖୋଜିଲେ । ସେମାନଙ୍କର ଦୁଃଖର ସୀମା ରହିଲା ନାହିଁ, ସଂସାର ଅନ୍ଧକାର ଦିଶିଲା । ବନ୍ଧୁବାନ୍ଧବଙ୍କ ଘର ଅନ୍ୱେଷଣ କରି ମନଦୁଃଖରେ କାଳେ ପୁତ୍ର ପ୍ରାଣ ହରାଇଦେଇଥିବ, ଏହି ଆଶଙ୍କାରେ ଅକୂଳ ଶୋକ-ସମୁଦ୍ରରେ ଭାସିଲେ । ଏମନ୍ତ ସମୟରେ ଗୋବିନ୍ଦ ରଥଙ୍କ ପତ୍ର ମିଳିଲା । ସେ ଲେଖିଲେ—"ମିତ୍ର ଅବଧାନେ, ଆପଣଙ୍କର ପୁତ୍ର ନୀଳମଣି ପଢ଼ିବା ଉଦ୍ଦେଶ୍ୟରେ କଟକ ଆସି ମୋ ବସାରେ ଅଛି । ମୁଁ ମହାମେଳାକୁ କଲିକତା ଯାଉଅଛି, ସଙ୍ଗରେ ସେ ଯିବ । ତା ସକାଶେ କୌଣସି ଭାବନା କରିବ ନାହିଁ । ଫେରିବାମାତ୍ରେ ତାକୁ ଆପଣଙ୍କ ନିକଟକୁ ପଠାଇଦେବି ।"

୧୮୮୩ ମସିହାରେ ପ୍ରାତଃସ୍ମରଣୀୟ ଗଭର୍ଣ୍ଣର-ଜେନେରେଲ ଲର୍ଡ୍ ରିପନଙ୍କ ଆଦେଶରେ ଭାରତୀୟ ଶ୍ରମଶିଳ୍ପର ଉନ୍ନତି ପାଇଁ କଲିକତା ମହାନଗରୀରେ ଆନ୍ତର୍ଜାତିକ ପ୍ରଦର୍ଶନୀ (Inter-national Exhibition) ଅନୁଷ୍ଠିତ ହେଲା । ଗୋବିନ୍ଦ ରଥେ ଉକ୍ତ ଅନୁଷ୍ଠାନରେ ଯୋଗ ଦେବା ପାଇଁ କଲିକତା ବାହାରିବାର ଦେଖି ନୀଳମଣି ତାଙ୍କୁ କହିଲେ—"ମୁଁ କେବେ କଲିକତା ଯାଇ ନାହିଁ, ତେଣୁ ଆପଣଙ୍କ ସଙ୍ଗରେ ଯିବାକୁ ଇଚ୍ଛା । ମୋହର ଖର୍ଚ୍ଚ ମୁଁ ନିଜେ ଚଳାଇନେବି, ମୋତେ କେବଳ ସଙ୍ଗରେ ନିଅନ୍ତୁ ।" ରଥେ ଏହା ଶୁଣି ଆଉ ଦ୍ୱିରୁକ୍ତି ନ କରି ତାହାଙ୍କୁ ସଙ୍ଗରେ ନ ନେଇ ନୀଳମଣିଙ୍କୁ ସହଯାତ୍ରୀ କରି କଲିକତା ଯାତ୍ରା କଲେ । ସେତେବେଳେ ସେହି ମହାମେଳା ଦର୍ଶନ କରିବା ପାଇଁ କଟକରୁ ଅନେକ ଲୋକ କଲିକତା ଯାଉଥିଲେ । ସପ୍ତଦଶବର୍ଷୀୟ ନୀଳମଣିଙ୍କ ମନରେ ସେହି ପ୍ରଦର୍ଶନୀ-ଦର୍ଶନାକାଙ୍କ୍ଷା ବଳବତୀ ହୋଇଉଠିଲା । ସେ ପୂର୍ବସଞ୍ଚିତ ଅର୍ଥ ସାହାଯ୍ୟରେ ଚାନ୍ଦବାଲି ବାଟେ ଜାହାଜରେ ଚଢ଼ି କଲିକତା ଯାତ୍ରା କଲେ ଏବଂ କଲିକତାରୁ ଫେରିଆସିଲା ବେଳକୁ ସଞ୍ଚିତ ଅର୍ଥ ନିଃଶେଷ ହୋଇଯାଇଥିଲା; ତେଣୁ ସେ ସ୍ୱବ୍ୟୟରେ କଟକ ଟ୍ରେନିଙ୍ଗ୍ ସ୍କୁଲରେ ପଢ଼ିବାର ଆଶା ବିସର୍ଜନ କଲେ ।

ସେ ଗ୍ରାମକୁ ଯିବା ପୂର୍ବରୁ ଦିନେ ସହର ଭିତରଦେଇ ଯାଉଥିବାବେଳେ କଲେକ୍ଟର ରାଧାନାଥ ରାୟବାହାଦୁର ତାଙ୍କ ଅଫିସକୁ ଯାଉଁ ଯାଉଁ ବାଟରେ ନୀଳମଣିଙ୍କୁ ଦେଖି ତାଙ୍କର ପରିଚୟ ଜିଜ୍ଞାସା କଲେ । ନୀଳମଣି ତାଙ୍କର ଯାବତୀୟ ବୃତ୍ତାନ୍ତ ବର୍ଣ୍ଣନ କରୁ କରୁ ଅଫିସରେ ଉପସ୍ଥିତ ହେଲେ । କଲେକ୍ଟର ସମସ୍ତ ଶ୍ରବଣ ପରେ ଖଣ୍ଡିଏ କାଗଜ ଦେଇ ତାଙ୍କର ଲିପି ଦେଖିବା ଅଭିପ୍ରାୟରେ କେତେକ କଥା ଲେଖାଇଲେ । ତାଙ୍କର ଘନ ବିରଳ ବିଶୁଦ୍ଧ ରମଣୀୟ ଲିପି ଦର୍ଶନ କରି ପ୍ରସନ୍ନ ହୃଦୟରେ ତାଙ୍କ ଖାଦ୍ୟପାନ ନିମନ୍ତେ ତତ୍‌କ୍ଷଣାତ୍ ୧୦ ଟଙ୍କା ପ୍ରଦାନ କରି କହିଲେ—"ତୁମ୍ଭେ କଟକରେ କିଛିଦିନ ରହି ପ୍ରତିଦିନ ମୋ ନିକଟକୁ ଆସୁଥାଅ, ମୋର ଖଣ୍ଡେ ପୁସ୍ତକ ପେନ୍‌ସିଲରେ ଲେଖା ହୋଇଅଛି, ତାହା କାଳିରେ ଲେଖି ମୋହର ଟିକିଏ ଉପକାର କର, ମୁଁ କେଉଁଠାରେ କାର୍ଯ୍ୟ ଖାଲି ଅଛି ଅନୁସନ୍ଧାନ କରି ତୁମ୍ଭ ସମ୍ବନ୍ଧେ ଚେଷ୍ଟା କରିବି ।"

ନୀଳମଣି ଏହି ଆଶାବାଣୀ ଶୁଣି ଆଶ୍ୱସ୍ତ ହୋଇ କଲେକ୍ଟରଙ୍କ କବିତା ଲେଖୁ ଲେଖୁ ତାଙ୍କର ବଡ଼ାମ୍ବାବାସୀ କୃଷ୍ଣଚନ୍ଦ୍ର ମିଶ୍ରଙ୍କଠାରୁ ପତ୍ର ପାଇଲେ ଯେ "ବଡ଼ାମ୍ବାରେ ଶୀଘ୍ର ଦୁଇଗୋଟି ପ୍ରାଇମେରୀ ସ୍କୁଲ ଫିଟିବ, ମୁଁ ତାଙ୍କ ମୁଣ୍ଡଳୀ ସ୍କୁଲ ସକାଶେ ଦରଖାସ୍ତ କରିଅଛି, ଆପଣଙ୍କ ଇଚ୍ଛା ହେଲେ ଗୋପୀନାଥପୁର ସ୍କୁଲ ସକାଶେ ଚେଷ୍ଟା କରନ୍ତୁ ।" ସେ ପତ୍ର ରାଧାନାଥ ବାବୁ ଦେଖି ସେ ଅଞ୍ଚଳ ସବ୍‌ଇନ୍‌ସପେକ୍‌ଟର ମଥୁରାନାଥ ସେନଙ୍କୁ କହି ବଡ଼ମ୍ବା ମେନେଜର ମଦନମୋହନ ପଟ୍ଟନାୟକଙ୍କଠାକୁ ଖଣ୍ଡିଏ ପତ୍ର ତାଙ୍କ ହସ୍ତରେ ଦେଇ ଏବଂ ପାଥେୟ ପାଞ୍ଚଟଙ୍କା ପ୍ରଦାନ କରି ପଠାଇଦେଲେ । ନୀଳମଣି ସ୍ୱଗ୍ରାମକୁ ଯାଇ ଦୁଇଦିନ ରହି ବଡ଼ାମ୍ବା ଗମନ କଲେ । ମେନେଜର କଲେକ୍ଟରଙ୍କ ପତ୍ର ପାଇବା-ମାତ୍ରେ ନୀଳମଣିଙ୍କୁ ଗୋପୀନାଥପୁର ସ୍କୁଲଶିକ୍ଷକରୂପେ ନିଯୁକ୍ତି-ପତ୍ର ଦେଲେ ଏବଂ ସବୁ ସୁବିଧା କରିବା ସକାଶେ ସେ ଗ୍ରାମ ସରବରାକାରଙ୍କଠାକୁ ଆଦେଶ ଦେଲେ । ନୀଳମଣି ନୂତନ ସ୍କୁଲରେ ନୂତନ ଶିକ୍ଷକ ହୋଇ ମନପ୍ରାଣ ଢାଳି କାର୍ଯ୍ୟ କରିବାକୁ ଲାଗିଲେ । ଏହାଙ୍କ ଶିକ୍ଷାପ୍ରଣାଳୀ ଦେଖି ଗ୍ରାମବାସୀମାନେ ସନ୍ତୁଷ୍ଟ ହେଲେ । ଅଳ୍ପଦିନ ମଧ୍ୟରେ ଛାତ୍ରସଂଖ୍ୟା ଶତାଧିକ ହୋଇଥିଲା । ଯେଉଁମାନେ ଦିବାଭାଗରେ ନାନାକାର୍ଯ୍ୟ ନ କଲେ ନ ଚଳେ, ଏପରି ଯୁବକ-ମାନଙ୍କ ସକାଶେ ନୀଳମଣି ଏକ ନୈଶ ବିଦ୍ୟାଳୟ ପ୍ରତିଷ୍ଠା କରି ସେମାନଙ୍କୁ ଶିକ୍ଷା ଦେବାକୁ ଲାଗିଲେ । ସେଥିପାଇଁ ପ୍ରତ୍ୟେକ ଛାତ୍ର ନିଜ ଅବସ୍ଥାଦୃଷ୍ଟିରେ ଦୁଇଅଣାଠାରୁ ଆଠଅଣା ପର୍ଯ୍ୟନ୍ତ ପାରିଶ୍ରମିକ ଦେଉଥିଲେ । ସେ ଗ୍ରାମର ସରବରାକାର ବନ୍ଧୁ ସୁବୁଦ୍ଧି ଦେଶୀୟ ରୀତିରେ ଶିକ୍ଷିତ ଜଣେ ଐଶ୍ୱର୍ଯ୍ୟଶାଳୀ ଉତ୍ସାହୀ ଯୁବକ । ସେ ନୀଳମଣିଙ୍କ ସୌଜନ୍ୟରେ ମୁଗ୍ଧ ହୋଇ ତାଙ୍କ ସଙ୍ଗେ

ସଖ୍ୟାଭାବରେ ବନ୍ଦହେଲେ । ସେହି ସୂତ୍ରରେ ରାଜସ୍ୱ ଆଦାୟର ଲେଖାଲେଖି ହିସାବପତ୍ର ନୀଳମଣିଙ୍କ ଦ୍ୱାରା ସମ୍ପାଦିତ ହେଉଥିଲା । ସେ ଗ୍ରାମର ପ୍ରଜାମାନେ ତମସୁକ, ଦସ୍ତାବିଜ ପ୍ରଭୃତି ନୀଳମଣିଙ୍କଠାରେ ଲେଖାଇ ଉଚିତ ପାରିଶ୍ରମିକ ପ୍ରଦାନ କରୁଥିଲେ । ସେଠାରେ ନୂତନ ଏକ କାଞ୍ଜିଅହାଉସ ପ୍ରତିଷ୍ଠିତ ହେଲା ଏବଂ ତହିଁର ଭାର ନୀଳମଣିଙ୍କୁ ଦିଆହେଲା । ତହିଁରେ ସରକାରୀ ପାଉଣା ଯାଇ ଯାହା ଲାଭ ହେଉଥିଲା, ସେ ତାହା ନିଜେ ବ୍ୟୟ ନ କରି ସରବରାକାରଙ୍କଠାରେ ଜମା ରଖିଲେ । ପରେ ଗ୍ରାମବାସୀଙ୍କଠାରୁ କିଛି କିଛି ଚାନ୍ଦା କରି ସେହି ଅର୍ଥରେ ସେ ଗ୍ରାମର ଦେବତାମାନଙ୍କ ପାଇଁ ଚନ୍ଦନଯାତ୍ରା, ଝୁଲଣ, ଦୋଳଯାତ୍ରା ପ୍ରତିଷ୍ଠା କଲେ । ନୀଳମଣି ଅନେକ କାଳ ହେଲା ସେ ସ୍ଥାନ ତ୍ୟାଗ କଲେଣି; ମାତ୍ର ଏହି ଉତ୍ସବମାନ ଅଦ୍ୟାବଧି ଅନୁଷ୍ଠିତ ହୋଇ ଆସୁଅଛି ।

ଗୋପୀନାଥପୁରରେ ଗୋଟିଏ ବ୍ରାହ୍ମଣଶାସନ ଥିଲା । ତହିଁର ବ୍ରାହ୍ମଣ-ସନ୍ତାନଙ୍କୁ ନିରକ୍ଷର ଓ କର୍ମକାଣ୍ଡ ଜ୍ଞାନଶୂନ୍ୟ ଦେଖି ଦିନେ ସମସ୍ତଙ୍କୁ ନୀଳମଣି ଡକାଇ ଗୋଟିଏ ଚତୁଷ୍ପାଠୀ ସ୍ଥାପନପୂର୍ବକ ସନ୍ଧ୍ୟା, ତର୍ପଣ, ପୂଜା, ବୈଶ୍ୱଦେବ, ହୋମ, ବିଷ୍ଣୁ ବନ୍ଦାପନା ପ୍ରଭୃତି ପଢ଼ାଇବା ପାଇଁ ଜଣେ ଶିକ୍ଷିତ ଶିକ୍ଷକ ନିଯୋଗର ବ୍ୟବସ୍ଥା କରିଦେଲେ । ଏହି ଉପାୟ ଯୋଗୁଁ ଶାସନ-ବ୍ରାହ୍ମଣମାନେ ନୀଳମଣିଙ୍କଠାରୁ ପ୍ରାପ୍ତ ହେବା ଉପକାର ଅଦ୍ୟାପି ବିସ୍ମୃତ ହୋଇପାରି ନାହାନ୍ତି ।

ନୀଳମଣିଙ୍କ ବସା ଓ ବିଦ୍ୟାଳୟର ନିକଟରେ ମୋହନ ସୁବୁଦ୍ଧି ନାମରେ ଜଣେ ତେଲି ଜାତିର ଯୁବକ କୌଣସି କାର୍ଯ୍ୟ ନ କରି ସମସ୍ତ ଦିନ ପିଣ୍ଡାରେ ବସିଥାଏ । ତାହାକୁ ପ୍ରତିଦିନ ଏହିପରି ନିଷ୍କର୍ମା ହୋଇ ବସିବାର ଦେଖି ନୀଳମଣି ଦିନେ ପଚାରିଲେ—ଏପରି ବସି ବସି କାଳ କାଟୁଛ କାହିଁକି ? ସେ କହିଲା—ମୁଁ ମହାଜନ ପିଲା, ବେପାର ଜାଣେ; ମାତ୍ର ପଇସା ନ ମିଳିବାରୁ ଦୁଇଟି ଭାଇ ଏପରି ବସି ମାଆ ଯାହା ଉପାର୍ଜ୍ଜନ କରେ, ତହିଁରେ ଉଦର ପୋଷଣ କରୁଅଛୁଁ ।

ନୀଳମଣି କହିଲେ—ମୁଁ ପାଞ୍ଚ ଟଙ୍କା ଦେବି, ଗୋଟିଏ ଛୋଟ ଦୋକାନ କର । କ୍ରମଶଃ ତହିଁରେ ଆଉ କିଛି ମିଶାଇ ଦୋକାନର ଉନ୍ନତି କରିବ । ମୋହନ ସେ ଟଙ୍କା ନେଇ ତେଲ, ଲୁଣ, ଧୂଆଁ ପତ୍ର, ପାନଗୁଆ ଇତ୍ୟାଦିର ଦୋକାନ କଲା । ଦେଖୁ ଦେଖୁ ମାସକ ମଧ୍ୟରେ ୮।୧୦ ଟଙ୍କା ଲାଭ ହେଲା । ନୀଳମଣି ତାଙ୍କ ସଙ୍ଗାତ ସରବରାକାରଙ୍କୁ କହି ତାକୁ ନିଜ ଜାମିନରେ ୫୦ଟଙ୍କା କରାଇଦେଲେ । ସେ କଳାପଥର ଲୁଗା ବେପାରୀକୁ ପଚିଶ ଟଙ୍କା ଦେଇ ଏକଶତ ଟଙ୍କାର ନୂତନ ବସ୍ତ୍ର ଆଣି ବଡ଼ାମ୍ବା ଗଡ଼ରେ ଏକ ଦୋକାନ କଲା । ପନ୍ଦର

କୋଡ଼ିଏ ଦିନ ପରେ ତାହା ବିକ୍ରୟ କରି କଟକ ଯାଇ ଲୁଗା ଓ ତେଜସପତ୍ର ପଦାର୍ଥ ଦୁଇ ତିନିଶହ ଟଙ୍କାର ଆଣି ବିକି ମହାଜନର ଟଙ୍କା କ୍ରମଶଃ ଦେଇ କ୍ରମେ କ୍ରମେ ନୂତନ ଦ୍ରବ୍ୟ ଆଣୁଥାଏ । ସେ ଏହି ଭାବରେ ବର୍ତ୍ତମାନ ଧନବାନ୍ ହୋଇ ବଡ଼ାମ୍ବା ଗଡ଼ରେ ଏକ ଉଚ୍ଚବିଦ୍ୟାଳୟ ସ୍ଥାପନ ନିମନ୍ତେ ସ୍ୱେଚ୍ଛାକ୍ରମେ ସାତ ସହସ୍ର ଟଙ୍କା ପ୍ରଦାନ କରି ଗଭର୍ଣ୍ଣମେଣ୍ଟଙ୍କଠାରୁ 'ରାୟସାହେବ' ଉପାଧି ଲାଭ କରିଅଛନ୍ତି ।

ପ୍ରକୃତରେ ନୀଳମଣିଙ୍କର ଏହିଠାରେ କର୍ମମୟ ଜୀବନର ସୂତ୍ରପାତ ହେଲା । ସେ ସ୍ୱୀୟ ଅଧ୍ୟବସାୟ ଓ ସଙ୍କୋଚିତ ବ୍ୟବହାର ଦ୍ୱାରା ବଡ଼ାମ୍ବାର ତତ୍କାଳୀନ ମେନେଜରଙ୍କ ପ୍ରୀତି ଆକର୍ଷଣ କରିବାକୁ ଲାଗିଲେ । ଅଳ୍ପକାଳ ମଧ୍ୟରେ ତାଙ୍କ ଦ୍ୱାରା ପରିଚାଳିତ ବିଦ୍ୟାଳୟର ଖ୍ୟାତି ସର୍ବତ୍ର ପ୍ରଚାରିତ ହେଲା । ସମଗ୍ର ଗଡ଼ଜାତର ଉ. ପ୍ରା. ସ୍କୁଲ ପାଇଁ ସେତେବେଳେ ଅତ୍ୟଳ୍ପ ସଂଖ୍ୟକ ଗଭର୍ଣ୍ଣମେଣ୍ଟ ବୃତ୍ତି ନିର୍ଦ୍ଦିଷ୍ଟ ଥିଲା । ସୁତରାଂ ପ୍ରତିଯୋଗିତା କ୍ଷେତ୍ରରେ ଯେଉଁ ସ୍କୁଲର ଛାତ୍ର କୃତକାର୍ଯ୍ୟ ହେଉଥିଲା, ତାହାର ଅଧ୍ୟାପକଙ୍କ ପ୍ରତି ସାଧାରଣ ଦୃଷ୍ଟି ଆକୃଷ୍ଟ ହେବା ସ୍ୱାଭାବିକ । ନୀଳମଣି ସେଠାରେ କାର୍ଯ୍ୟଭାର ଗ୍ରହଣ କରିବାର ଦ୍ୱିତୀୟ ବର୍ଷରେ ଜଣେ ଛାତ୍ର ( ତାଙ୍କର ଅନୁଜ—ଦାମୋଦର ) ସରକାରୀ ବୃତ୍ତି ପାଇବାରୁ ମେନେଜର ଓ ଅନ୍ୟାନ୍ୟ ରାଜକର୍ମଚାରୀ ତାଙ୍କୁ ବିଶେଷ ସମ୍ମାନ ପ୍ରଦର୍ଶନ କଲେ । ବଡ଼ାମ୍ବାର ରାଜା ଦାଶରଥି ମଙ୍ଗରାଜ ବୀରବର ମହାପାତ୍ରଙ୍କର ମୃତ୍ୟୁ ହୋଇଥିବାରୁ ଏହି ସମୟରେ ବଡ଼ାମ୍ବା ରାଜ୍ୟ କୋର୍ଟ ଅଫ୍ ୱାର୍ଡ୍ସର ଅଧୀନ ହୋଇଥିଲା । ଏକଦା ତଦୀୟ ମହିଷୀ ସ୍ୱୀୟ ଅପ୍ରାପ୍ତ ବୟସ୍କ ପୁତ୍ର ବିଶ୍ୱମ୍ଭରଙ୍କ ସଙ୍ଗରେ ଦେବ ପୂଜା ଦିବା କାମନାରେ ମହାନଦୀ ମଧ୍ୟବର୍ତ୍ତୀ ପର୍ବତ ପାଦଦେଶସ୍ଥ ପ୍ରସିଦ୍ଧ ସିଂହନାଥ ମହାଦେବଙ୍କ ନିକଟରେ ଅବସ୍ଥାନ କରୁଥିଲେ । ନୀଳମଣି ଏହା ଜାଣିପାରି ସ୍ୱର୍ଗତ ରାଜା, ରାଜମହିଷୀ ଓ ମେନେଜରଙ୍କ ଗୁଣ କୀର୍ତ୍ତିନକରି କୋଡ଼ିଏ ମନୋରମ କବିତା ରଚନା କଲେ ଓ ତାହା ମଧୁରକଣ୍ଠ ଶିଷ୍ୟମାନଙ୍କ କଣ୍ଠରେ ସିଂହନାଥ ଦେବଙ୍କ ନିକଟରେ ରାଣୀଙ୍କ ସମ୍ମୁଖରେ ଆବୃତ୍ତି କରାଇଲେ । ରାଣୀ ଏଥିରେ ପରମ ପରିତୁଷ୍ଟ ହୋଇ ତାଙ୍କୁ ନଗଦ ପଚାଶଟଙ୍କା, ପଟ୍ଟବସ୍ତ୍ର ସହ 'ବିଦ୍ୟାରତ୍ନ' ଉପାଧି ଅର୍ପଣ କରି ଖଣ୍ଡେ ସାର୍ଟିଫିକେଟ ପ୍ରଦାନ କଲେ । ସେ ସେହିଦିନଠାରୁ 'ବିଦ୍ୟାରତ୍ନ' ନାମରେ ଓଡ଼ିଶାର ଶିକ୍ଷିତ ସମାଜ ନିକଟରେ ସୁପରିଚିତ । ବଡ଼ାମ୍ବାରେ ଥିବା ବେଳେ ସେ କଟକ ସୁତଲ ପ୍ରେସରୁ ବାହାରୁଥିବା 'ସଂସ୍କାରକ' ନାମକ ପତ୍ରିକାର ନିୟମିତ ଲେଖକ ଥିଲେ । ପରଶ୍ରୀକାତର ମନୁଷ୍ୟ ସର୍ବଦେଶରେ ଓ ସର୍ବକାଳରେ ବିଦ୍ୟମାନ ଅଛନ୍ତି । ବଡ଼ାମ୍ବାରେ ନୀଳମଣିଙ୍କ ସମ୍ମାନ-ଲାଭରେ ଈର୍ଷାନ୍ୱିତ ହୋଇ କେତେକ ଲୋକ ତାଙ୍କର ଅନିଷ୍ଟ କରିବାକୁ

ପ୍ରବୃତ୍ତ ହେଲେ । ବିଶେଷତଃ ତାଙ୍କର ଆଳସ୍ୟପରବଶ ଦ୍ୱିତୀୟ ପଣ୍ଡିତ ତାଙ୍କର ଶତ୍ରୁତାଚରଣ କରିବା ନିଜର ଏକ ପ୍ରଧାନ କର୍ତ୍ତବ୍ୟ ବୋଲି ମନେ କଲେ । ସେ ରାଜଦରବାରରେ ଓ ସ୍କୁଲ ସବ୍‌ଇନ୍‌ସ୍‌ପେକ୍ଟରଙ୍କ ପାଖରେ 'ପଣ୍ଡିତେ ସର୍ବଦା ପଶାଖେଳରେ ଆସକ୍ତ' ବୋଲି କହି ବୁଲିଲେ । ଦ୍ୱିତୀୟ ଶିକ୍ଷକଙ୍କର ଏହି ଅନନୁଷ୍ଠାଚରଣ ଦ୍ୱାରା ନୀଳମଣି ବଡ଼ାମ୍ବା ପରିତ୍ୟାଗ କରି ଅନ୍ୟତ୍ର ଚାଲିଯିବାକୁ ଅଭିଳାଷୀ ହେଲେ ।

ଏହି ସମୟରେ ବାମଣ୍ଡା ଦେବଗଡ଼ ମି. ଭ. ସ୍କୁଲରେ ଦ୍ୱିତୀୟ ଶିକ୍ଷକପଦ ଶୂନ୍ୟ ଥିବାର ଅବଗତ ହୋଇ ନୀଳମଣି ସେହି ପଦପ୍ରାପ୍ତି ନିମନ୍ତେ ବାମଣ୍ଡାକୁ ଖଣ୍ଡିଏ ଦରଖାସ୍ତ ପଠାଇଲେ । ଅନେକ ଦିନ ଅତିବାହିତ ହେଲା; କୌଣସି ଉତ୍ତର ପାଇଲେ ନାହିଁ । ତାଙ୍କର ସେହି ଦ୍ୱିତୀୟ ପଣ୍ଡିତ ଏହି ସମ୍ବାଦ ଶୁଣି ତାଙ୍କୁ ଶୀଘ୍ର ବଡ଼ାମ୍ବାରୁ ବିଦାୟ କରିଦେବା ଉଦ୍ଦେଶ୍ୟରେ ଏକ କୂଟ ଲେଖ୍ୟ ପ୍ରସ୍ତୁତ କରି ଦେବଗଡ଼ ମି. ଭ. ସ୍କୁଲର ଦ୍ୱିତୀୟ ଶିକ୍ଷକପଦର ନିଯୁକ୍ତିପତ୍ରରୂପେ ତାହା ବଡ଼ାମ୍ବା ଡାକଘରୁ ନୀଳମଣିଙ୍କ ନାମରେ ପ୍ରେରଣ କଲେ । ପୋଷ୍ଟଅଫିସ ମୋହରରେ ବଡ଼ାମ୍ବାକୁ ବାମରା ( ବାମଣ୍ଡାର ପୋଷ୍ଟାଫିସ ନାମ ବାମରା) ବୋଲି ପଢ଼ିବା ଅତି ଅସ୍ୱାଭାବିକ ନୁହେଁ । ନୀଳମଣି ସେହି କୃତ୍ରିମ ପତ୍ର ପାଇ ବଡ଼ାମ୍ବା ତ୍ୟାଗ କରି ଅବିଳମ୍ବେ ବାମଣ୍ଡା ଅଭିମୁଖରେ ପ୍ରସ୍ଥାନ କଲେ । ଘୋର ଅରଣ୍ୟ ପଥରେ ବହୁକାଳ ଚାଲି ଚାଲି ବାମଣ୍ଡାରେ ଉପସ୍ଥିତ ହୋଇ ରାଜାମହୋଦୟଙ୍କ ସଙ୍ଗରେ ଦେଖାକଲେ । ସେପର୍ଯ୍ୟନ୍ତ ଦେବଗଡ଼ ସ୍କୁଲରେ ଶୂନ୍ୟ ଥିବା କାର୍ଯ୍ୟରେ କୌଣସି ଲୋକ ନିଯୁକ୍ତ ହୋଇ ନ ଥିଲେ । ରାଜାସାହେବ ସେହି କୃତ୍ରିମ ନିଯୁକ୍ତିପତ୍ର ଦେଖି ପ୍ରଥମେ ଟିକିଏ ଚଞ୍ଚଳ ହୋଇପଡ଼ିଲେ । ମାତ୍ର ପରେ ନୀଳମଣିଙ୍କ ମୁଖରୁ ତାଙ୍କ ଶତ୍ରୁସଙ୍କୁଳ ବଡ଼ାମ୍ବାର ଘଟଣା ଶ୍ରବଣ କରି ଦୟାର୍ଦ୍ର ଅନ୍ତଃକରଣରେ ତାଙ୍କୁ ଉକ୍ତ କାର୍ଯ୍ୟରେ ନିଯୁକ୍ତ କଲେ । ଏହିପରି ଭାବରେ ନୀଳମଣି ଦୈବକର୍ତ୍ତୃକ ପ୍ରେରିତ ହେଲା ପରି ବାମଣ୍ଡାରେ କାର୍ଯ୍ୟଭାର ଗ୍ରହଣ କଲେ ।

ଏହିଠାରେ ପ୍ରାତଃସ୍ମରଣୀୟ ମନୋହର କୀର୍ତ୍ତି ସୁଗୃହୀତନାମା ମହାରାଜା ବାସୁଦେବ ସୁଢ଼ଳଦେବ ନୀଳମଣିଙ୍କ ଅନ୍ତର୍ନିହିତ ପ୍ରଚ୍ଛନ୍ନ ଶକ୍ତିର ଆଭାସ ପାଇ ତାଙ୍କୁ ଅତ୍ୟନ୍ତ ସମାଦର କରିବାକୁ ଲାଗିଲେ । ନୀଳମଣି ସୁଢ଼ଳଦେବଙ୍କ ସ୍ନେହସହାନୁଭୂତି ଲାଭ କରି ଆପଣାକୁ କୃତକୃତ୍ୟ ମନେକଲେ । ତାଙ୍କର ଅଧ୍ୟାପନା-କୌଶଳ ଓ ଧୀମତ୍ତାରେ ସନ୍ତୁଷ୍ଟ ହୋଇ ମହାରାଜା ମହୋଦୟ ୧୮୮୮ ମସିହାରେ ତାଙ୍କୁ ସମଗ୍ର ରାଜ୍ୟର ଶିକ୍ଷକଙ୍କୁ ସବେତନ ଓ ଅବେତନ ସର୍ବବିଧ ଅବକାଶ ପ୍ରଦାନ କରିବାର କ୍ଷମତା ପ୍ରଦାନ କଲେ ।

ଓଡ଼ିଶାର ଆଧୁନିକ ସାହିତ୍ୟର ଉନ୍ନତି କାମନାରେ ସାର ବାସୁଦେବ ଯେଉଁ କାର୍ଯ୍ୟ କରିଅଛନ୍ତି, ସେଥିପାଇଁ ତାଙ୍କ ନାମ ଉତ୍କଳ ସାହିତ୍ୟ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ତାଙ୍କର ବହୁତୋମୁଖୀ ପ୍ରତିଭା ଅନ୍ୟାନ୍ୟ ଦିଗରେ ଯେପରି ସିଦ୍ଧିଲାଭ କରିଅଛି, ସାହିତ୍ୟରେ ମଧ୍ୟ ସେହିପରି ସିଦ୍ଧ ହୋଇଥିଲା । ସେତେବେଳେ ବାମଣ୍ଡା ରାଜନୀତିକ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ରହିଥିଲେ ହେଁ ସେ ମାତୃଭାଷାର ଉନ୍ନତି କାମନାରେ କାୟମନୋବାକ୍ୟରେ ଚେଷ୍ଟା କରିବାକୁ ଲାଗିଲେ । ତାଙ୍କ ସାଧୁ ଚେଷ୍ଟାରେ ସହାୟତା କରିବା ପାଇଁ ସତେ ଯେପରି ନୀଳମଣି ବିଧିପ୍ରେରିତ ସହଚରରୂପେ ତାଙ୍କ ନିକଟରେ ଉପସ୍ଥିତ ହେଲେ । ଉତ୍କଳ ସାହିତ୍ୟର ଉନ୍ନତି କାମନାରେ ସେ କଟକ ନଗରରେ ସୁଢ଼ଲ ପ୍ରେସ ନାମକ ଗୋଟିଏ ପ୍ରେସ ପ୍ରତିଷ୍ଠିତ କରିଥିଲେ । ମାତ୍ର ତାହାର କାର୍ଯ୍ୟ କଟକରେ ସୁରୁଖୁରୁରୂପେ ପରିଚାଳିତ ନ ହେବାରୁ ସେ ତାହାକୁ ୧୮୮୬ ଖ୍ରୀଷ୍ଟାବ୍ଦରେ ଦେବଗଡ଼କୁ ଉଠାଇନେଇ ତହିଁରେ ପୁସ୍ତକ, ଫର୍ମ ପ୍ରଭୃତି ଓ ଜଗନ୍ନାଥବଲ୍ଲଭ ପ୍ରେସରେ 'ସମ୍ବଲପୁର ହିତୈଷିଣୀ' ପତ୍ରିକା ମୁଦ୍ରିତ ହେବାର ସୁବ୍ୟବସ୍ଥା କରିଦେଲେ । ସେତେବେଳେ ଓଡ଼ିଶାରେ ଗଦ୍ୟପଦ୍ୟ ସାହିତ୍ୟର ଅବସ୍ଥା ଅତୀବ ଶୋଚନୀୟ ଥିଲା । ବିଶେଷତଃ ଗଡ଼ଜାତମାନଙ୍କରେ ଲିଖିତ ଓ କଥିତ ଭାଷାର କୌଣସି ପ୍ରଭେଦ ନ ଥିଲା କହିଲେ ଚଳେ । ମୋଗଲବନ୍ଦୀ ଅଞ୍ଚଳରେ ମୁଷ୍ଟିମେୟ ଲୋକହିଁ ଭାଷାଚର୍ଚ୍ଚାରେ ପ୍ରବୃତ୍ତ ହୋଇଥିଲେ । ଏହି ଶୋଚନୀୟତାର ନିରାକରଣ ନିମିତ୍ତ ୧୮୮୭ ଖ୍ରୀଷ୍ଟାବ୍ଦରେ ମହାରାଜ ବାସୁଦେବ ଦେବଗଡ଼ରୁ 'ସମ୍ବଲପୁର ହିତୈଷିଣୀ' ନାମ୍ନୀ ପତ୍ରିକା ପ୍ରକାଶ କଲେ । ସେ ସ୍ୱୟଂ ସୁପଣ୍ଡିତ ଓ ମନୀଷୀ ଥିଲେ । ତେଣୁ ପତ୍ରିକାର ସମ୍ପାଦନ ଓ ପରିଚାଳନ କାର୍ଯ୍ୟରେ ନିଜେ ଏକମାତ୍ର ପୃଷ୍ଠପୋଷକରୂପେ କାର୍ଯ୍ୟ କରିବାକୁ ଲାଗିଲେ ।

ପ୍ରଥମେ ରାଜକୁମାର ସ୍କୁଲର ହେଡ଼୍ ମାଷ୍ଟର ବାବୁ ଗଣେଶ୍ୱର ପଟ୍ଟନାୟକ ବି. ଏ. ଏହି ପତ୍ରିକାର ସମ୍ପାଦକ ଥିଲେ, ମାତ୍ର କିଛି ଦିନ ପରେ ମହାରାଜା ସୁଢ଼ଲଦେବ ନୀଳମଣି ବିଦ୍ୟାରତ୍ନଙ୍କୁ ପତ୍ରିକାର ସ୍ଥାୟୀ ସମ୍ପାଦକ କାର୍ଯ୍ୟରେ ନିଯୁକ୍ତ କଲେ । ନୀଳମଣି ତଦୀୟ କର୍ମମୟ ଜୀବନର ପ୍ରାକ୍‌କାଳରେ ପତ୍ରିକା ସମ୍ପାଦନ କାର୍ଯ୍ୟରେ କିପରି ଅସାଧାରଣ ଶକ୍ତିସାମର୍ଥ୍ୟ ଓ ପ୍ରତିଭା ପ୍ରକାଶ କରିଥିଲେ, ତାଙ୍କର ସମସାମୟିକ ଅନେକ ଲୋକ ଏହା ଅବଗତ ଅଛନ୍ତି । ସେ ପ୍ରଗାଢ଼ ଅଧ୍ୟବସାୟ ସହକାରେ 'ସମ୍ବଲପୁର ହିତୈଷିଣୀ'କୁ ଉତ୍କଳର ସର୍ବପ୍ରଧାନ ପତ୍ରିକାରେ ପରିଣତ କଲେ । ସେତେବେଳେ 'ହିତୈଷିଣୀ' କେବଳ ସାପ୍ତାହିକ ସମ୍ବାଦ ପତ୍ରିକା ନ ଥିଲା, ରାଜନୀତିକ, ସାମାଜିକ, ସାହିତ୍ୟିକ, ବୈଜ୍ଞାନିକ ତଥା ଧର୍ମସମ୍ବନ୍ଧୀୟ ତ.ବଣୀୟ ବିଷୟ ଏଥିରେ ସୁରୁଖୁରୁରୂପେ ଆଲୋଚିତ ହେଉଥିଲା ।

“ସମାଜ କାର୍ଯ୍ୟାଣି ଚ ରାଜନୀତିବିଜ୍ଞାନ ସାହିତ୍ୟ ବସ୍ତୁରପ୍ୟୁକ୍ତଃ,
ଯତ୍ରୈବ ସନ୍ଦେଶ ବଚଃ ପ୍ରମେୟଂ ଚରଂ ବରିବର୍ତ୍ତି, ସୁପତ୍ରିକେୟଂ ।”

ନୀଳମଣି ପତ୍ରିକାର ଏହି ଶୀର୍ଷୋକ୍ତ ବିଷୟମାନଙ୍କ ପ୍ରତି ଦୃଷ୍ଟି ଦେଇ ତାହାର ସାହିତ୍ୟିକ ସମ୍ପଦ ଓ ସମ୍ମାନ ଅଭିବୃଦ୍ଧି ବିଷୟରେ ପ୍ରାଣପଣେ ଯତ୍ନ କରିବାକୁ ଲାଗିଲେ । ପତ୍ରିକା ପ୍ରଚାରକାର୍ଯ୍ୟ ଜୀବନର ପ୍ରଧାନତମ ବ୍ରତ କରି ସେ ସ୍ୱକୀୟ ତୀକ୍ଷ୍ଣଦୃଷ୍ଟି ସମାଜର ସର୍ବନିମ୍ନସ୍ତର ପର୍ଯ୍ୟନ୍ତ ନିକ୍ଷେପପୂର୍ବକ କେଉଁଠାରେ କି ଅଭାବ ଅସୁବିଧା ବିଦ୍ୟମାନ, କେଉଁଠାରେ କିପ୍ରକାର ପାପପିଶାଚ ମୂର୍ତ୍ତି ଧାରଣ କରି ତାହାର ବିକଟ ତାଣ୍ଡବରେ ସମାଜକୁ ବ୍ୟତିବ୍ୟସ୍ତ କରୁଅଛି, କେଉଁଠାରେ କି କୁତ୍ସିତ କୁସଂସ୍କାର ଆବର୍ଜନାରୂପେ ରାଶୀକୃତ ହୋଇ ରହିଅଛି, ସେ ସମସ୍ତ ପତ୍ରିକାରେ ପ୍ରକାଶକରିବା ତହିଁର ପ୍ରତିକାର ନ ହେବା ପର୍ଯ୍ୟନ୍ତ ବାରମ୍ବାର ସର୍ବସାଧାରଣଙ୍କ ମନୋଯୋଗାକର୍ଷଣ କରୁଥିଲେ । ନାନା ନୂତନ ଚିନ୍ତା, ନାନା ନୂତନ ଭାବ, ନାନା ନୂତନ ସମସ୍ୟା ହୃଦୟରେ ଧାରଣ କରି ପ୍ରତି ସପ୍ତାହରେ ନିୟମିତରୂପେ ପ୍ରକାଶିତ ହେବାଦ୍ୱାରା ‘ହିତୈଷିଣୀ’ ସତେ ଯେପରି ଉତ୍କଳର ଏକ ଅଭିନବ ଯୁଗର ସୂତ୍ରପାତ କଲା । ସେତେବେଳେ ପାଠକ-ସମାଜ ହିତୈଷିଣୀର ପ୍ରକାଶିତ ଦିବସକୁ ଏକାନ୍ତ ଉତ୍କଣ୍ଠିତ ହୃଦୟରେ ଅପେକ୍ଷା କରି ରହୁଥିଲେ । କେବଳ ନୀଳମଣି ଓ ମହାରାଜା ସୁଧଳଦେବ ଯେ ଏହାର ଲେଖକ ଥିଲେ, ତାହା ନୁହେଁ, ପରନ୍ତୁ ତତ୍କାଳୀନ ସମାଜରେ ଯେଉଁମାନେ ସାହିତ୍ୟ-କ୍ଷେତ୍ରରେ ପ୍ରବେଶ କରିଥିଲେ, ସେହି ସମସ୍ତଙ୍କ ଲେଖା ହିତୈଷିଣୀରେ ପ୍ରକାଶିତ ହେଉଥିଲା । ଯେପରି ସୌରଭାନୁସାରୀ ଭ୍ରମର ପୁଷ୍ପର ଅନୁସନ୍ଧାନ କରି ମଧୁ ସଂଗ୍ରହରେ ଭୋର ହୁଏ, ସେହିପରି ନୀଳମଣି ଓଡ଼ିଶାର କୌଣସି ଲୋକଠାରେ ସାହିତ୍ୟିକ ଶକ୍ତିମତ୍ତାର ଆଭାସ ଆଇଲକ୍ଷଣି ତାଙ୍କୁ ନାନା କୌଶଳରେ ହିତୈଷିଣୀର ଲେଖକ କରି ନେଉଥିଲେ । ଏହିପରି ଭାବରେ ହିତୈଷିଣୀ ସେତେବେଳେ ଓଡ଼ିଶାର ଅନେକ ଯୁବକଙ୍କୁ ସାହିତ୍ୟିକରୂପେ ପରିଣତ କରିଥିଲା । ଏହି ନବୀନ ଲେଖକମାନଙ୍କ ଛଡ଼ା ସ୍ୱର୍ଗତ ରାଧାନାଥ, ମଧୁସୂଦନ, ଚନ୍ଦ୍ରମୋହନ, ବିଶ୍ୱନାଥ ପ୍ରଭୃତି ତାହାର ନିୟମିତ ଲେଖକ ଥିଲେ । ବିଶ୍ୱନାଥ ବାବୁଙ୍କର ହିତବାଦ ନୀତି, ସାଧନା ଓ ସିଦ୍ଧି, ସାହିତ୍ୟଚର୍ଚ୍ଚା, ସାହିତ୍ୟ ଓ ସମାଲୋଚନା, କବିବର ଉପେନ୍ଦ୍ର ଭଞ୍ଜ, ଶିକ୍ଷାପୁରାତନ, ବାଲ୍ୟଶିକ୍ଷା ପ୍ରଭୃତି ସାହିତ୍ୟିକ ପ୍ରବନ୍ଧାବଳୀ ପ୍ରଥମେ ହିତୈଷିଣୀ ପତ୍ରିକାରେ ପ୍ରକାଶିତ ହୋଇଥିଲା । ତତ୍ପରେ କିଞ୍ଚିତ୍ ପରିବର୍ତ୍ତିତ ପରିବର୍ଦ୍ଧିତ ଆକାରରେ ତାଙ୍କର ‘ବିବିଧ ପ୍ରବନ୍ଧ’ରେ ସ୍ଥାନ ପାଇଅଛି । ସେ ଜଣେ ନିରପେକ୍ଷବାଦୀ ସମ୍ପାଦକ ଥିଲେ । ସପକ୍ଷ ବିପକ୍ଷ ଉଭୟଙ୍କ ଲେଖା ଉପାଦେୟତା ଦୃଷ୍ଟିରେ ପତ୍ରିକାରେ ପ୍ରକାଶ କରୁଥିଲେ ।

ସେଥିରେ ବସ୍ତୁବସ୍ତୁ ପ୍ରବନ୍ଧ ପ୍ରକାଶିତ ହେଉଥିଲା । ସୁତରାଂ ବିଦ୍ୱଜ୍ଜନ ସମାଜରେ ତାହା ଆଦୃତ ଥିଲା ।

ରାଧାନାଥ, ମଧୁସୂଦନ, ଫକୀରମୋହନ, ଭୋଳାନାଥ ପ୍ରମୁଖ ଶିକ୍ଷିତ ବ୍ୟକ୍ତିମାନଙ୍କର ସହାନୁଭୂତି ଓ ସାହଚର୍ଯ୍ୟ ଲାଭ କରି ଉତ୍ସାହ ଉଚ୍ଛ୍ୱସିତ ହୃଦୟରେ ସମାଜର ସକଳ ପ୍ରକାର ଉନ୍ନତି ଓ ସଂସ୍କାର ସାଧନ ଉଦ୍ଦେଶ୍ୟରେ ସେ ଅସୀମ ସାହସ, ଅବିଚଳିତ ଧୈର୍ଯ୍ୟ, ଅକମ୍ପିତ ନିର୍ଭୀକତା ଓ ଅସାଧାରଣ ନୈପୁଣ୍ୟ ପ୍ରକାଶ କରିବାକୁ ଲାଗିଲେ । ସେ ଯାହା ଅଭ୍ରାନ୍ତ ସତ୍ୟ ପୁଣି ନ୍ୟାୟ ଓ ଧର୍ମାନୁମୋଦିତ ବୋଲି ବୁଝୁଥିଲେ, ଅନେକଙ୍କର ତୀବ୍ର ସମାଲୋଚନା, ଅଜସ୍ର ବାଗ୍‌ବାଣ ପ୍ରୟୋଗରେ ସୁଦ୍ଧା ପଛଘୁଞ୍ଚା ଦେଉ ନ ଥିଲେ । ସେ ଯାହା ଅସତ୍ୟ ବା ଅଯଥାର୍ଥ ବୋଲି ବୁଝୁଥିଲେ, ତହିଁରେ ସେ କେବେହେଁ ସାହଚର୍ଯ୍ୟ କରୁ ନ ଥିଲେ ଅଥବା ଯାହା ଯଥାର୍ଥ ବୋଲି ହୃଦୟଙ୍ଗମ କରୁଥିଲେ, ତହିଁରୁ ସେ ବିଚଳିତ ହେଉ ନ ଥିଲେ । ଏକଦା ସେ କହୁଥିଲେ,

"ହୋଇ ଏକତ୍ରିତ ସ୍ୱର୍ଗ ଦେବଗଣ
କରିବେ ଯଦି ମୋ ଜୀବନ ହରଣ,

ନ ତେଜିବି ସତ୍ୟପଥ ସଦାଶୟ,
ଦେବି ନାହିଁ କେବେ ମିଥ୍ୟାକୁ ପ୍ରଶ୍ରୟ ।"

ସାର ସୁରଜଦେବଙ୍କ ଜୀବନଚରିତ ଲେଖକ 'ସମ୍ବଲପୁର ହିତୈଷିଣୀ' ସମ୍ବନ୍ଧରେ ଲେଖିଛନ୍ତି, 'ଯାହାର ଦୀର୍ଘକାଳବ୍ୟାପୀ ଅକ୍ଳାନ୍ତ ପରିଶ୍ରମ ଫଳରେ ସମ୍ବଲପୁର ହିତୈଷିଣୀ ନାନାବିଧ ସମ୍ବାଦସମ୍ଭାରରେ ସଜ୍ଜିତ ହୋଇ ପ୍ରତି ସପ୍ତାହରେ ପାଠକମାନଙ୍କ ନିକଟରେ ଦେଖା ଦେବାକୁ ଆରମ୍ଭ କରେ, ସେରୂପ ଅସାଧ୍ୟ ସାଧନରେ ସେ କାଳରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନହିଁ ନିଯୁକ୍ତ ଥିଲେ । ସେ ଜଣେ ସୁପଣ୍ଡିତ ଓ ଭାଷାଭିଜ୍ଞ ବ୍ୟକ୍ତି ଥିଲେ । କାବ୍ୟ, ଅଳଙ୍କାର, ସାହିତ୍ୟ ଓ ଇତିହାସରେ ତାଙ୍କର ଯଥେଷ୍ଟ ଅଧିକାର ଥିଲା । ତାହାଙ୍କର ଭାଷା ପ୍ରାଞ୍ଜଳ ଓ ମଧୁର ଥିଲା । ସେ ଯେଉଁ ବିଷୟରେ ହସ୍ତକ୍ଷେପ କରନ୍ତି, ତାହା ସହଜରେ ଛାଡ଼ନ୍ତି ନାହିଁ କିମ୍ବା ତହିଁରେ ତାହାଙ୍କୁ ସହଜରେ କେହି ଖଣ୍ଡନ କରିପାରନ୍ତି ନାହିଁ । ରାଜନୀତି, ସମାଜସଂସ୍କାର ବିଷୟରେ ତାହାଙ୍କର ଗଭୀର ଅଭିଜ୍ଞତା ଥିଲା । ରାୟକବି, ରାଓକବି, ବ୍ରାହ୍ମଧର୍ମପ୍ରଚାରକ ପଣ୍ଡିତ ନନ୍ଦଲାଲ ବନ୍ଦୋପାଧ୍ୟାୟ, ବିଶ୍ୱନାଥ କର ପ୍ରଭୃତି ବହୁବାର ବାମଣ୍ଡାଭ୍ରମଣ ଓ ଅବସ୍ଥିତି ସୂତ୍ରରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କର ବିବିଧ ସଦ୍‌ଗୁଣ ଓ ବିଦ୍ୟାବତ୍ତାର ଭୂରି ଭୂରି ପ୍ରଶଂସା କରିଅଛନ୍ତି । ଆକ୍ଷେପର ବିଷୟ, ଏତାଦୃଶ ଗୁଣବାନ୍ ବ୍ୟକ୍ତି

ସଂପ୍ରତି ସ୍ୱାସ୍ଥ୍ୟଭଙ୍ଗ ନିବନ୍ଧନ ଜୀବନ୍ମୃତ ଅବସ୍ଥାରେ ଗଞ୍ଜାମରେ ଶେଷ ଜୀବନଯାପନ କରୁଅଛନ୍ତି । ରାଜାଙ୍କର ଉପଦେଶ ଓ ପରାମର୍ଶରେ ନୀଳମଣି ଏପରି ସୁନ୍ଦର ଭାବରେ ଗଠିତ ହୋଇଥିଲେ ଯେ, ଶେଷରେ ତାଙ୍କ ତତ୍ତ୍ୱାବଧାନ କାଳରେ ସମ୍ବଲପୁର ହିତୈଷିଣୀ ସମ୍ବନ୍ଧେ ଅନେକ ସମୟରେ ରାଜା ବାସୁଦେବ ବିଶେଷ ଦୃଷ୍ଟିପାତ ନ କଲେ ମଧ୍ୟ ଚଳିଯାଉଥିଲା । ତାଙ୍କର ପତ୍ରିକା-ସମ୍ପାଦନ ସର୍ବଦା ରାଜାଙ୍କର ମନୋମତ ହେଉଥିଲା ।"

ନୀଳମଣି ତାଙ୍କ ପତ୍ରିକାରେ ବାଳବିଧବାମାନେ ନିର୍ଜ୍ଜଳା ଉପବାସ କରିବାକୁ ଶକ୍ତିହୀନ, ତେଣୁ ଏକାଦଶୀ ଦିନ କଳ୍ପିତ ଫଳାହାର ଦେବା ଉଚିତ ବୋଲି ପ୍ରମାଣ ସହିତ 'ବାଳବିଧବାର ଏକାଦଶୀ' ଉତ୍କଳ ଦେଶର ବ୍ରାହ୍ମଣମାନେ ନିଜ ନିଜ କନ୍ୟାକୁ ଘୋଡ଼ା ହାତୀ ପରି ମୂଲ୍ୟ କରି ବିକ୍ରୟ କରୁଥିବାରୁ ବିଦ୍ୟା-ରତ୍ନେ ତାହାର ଅବୈଧତା ପ୍ରଦର୍ଶନ କରି 'ସମାଜକଳଙ୍କ' ନାମକ ପୁସ୍ତକ ପ୍ରକାଶ କରିଥିଲେ ।

ଜୀବହିଂସା ଓ ମାଛ ମାଂସ ଭୋଜନ ଉଚିତ ନୁହେଁ ବୋଲି ସେ ପତ୍ରିକାରେ ଆନ୍ଦୋଳନ କରିବାରୁ ତାଙ୍କର ସେହି ପ୍ରବନ୍ଧ ଓ ଶାସ୍ତ୍ରୀୟ ପ୍ରମାଣ ହୃଦୟଙ୍ଗମ କରି ବହୁତ ଲୋକ ତାଙ୍କଠାକୁ ପତ୍ର ଲେଖିଥିଲେ । ସେ ଜିହ୍ୱାର ସୁଖ ଓ ଜୀବନର ମୂଲ୍ୟ ତୁଳନାପୂର୍ବକ ନାନା ଶାସ୍ତ୍ରୀୟ ପ୍ରମାଣ ଦେଇ 'ଜିହ୍ୱାସୁଖ ଓ ଜୀବନ' ନାମରେ ଖଣ୍ଡିଏ ପୁସ୍ତକ ପ୍ରକାଶ କରିଥିଲେ । ସେ ଚିକିତ୍ସକ ନୁହନ୍ତି, ତଥାପି ନାନା ଚିକିତ୍ସାଶାସ୍ତ୍ର ଆଲୋଚନା କରି କେତେକ ମାରାତ୍ମକ ରୋଗର ସହଜ ମୁଷ୍ଟିଯୋଗ ଓ ଔଷଧମାନ ପ୍ରସ୍ତୁତ କରି ରୋଗୀମାନଙ୍କ ମଧ୍ୟରେ ବିତରଣ କରୁଥିଲେ । ସେ ଆମବାତ ରୋଗଚିକିତ୍ସା, ଜ୍ୱର ଚିକିତ୍ସା, ମେହଚିକିତ୍ସା ପ୍ରଭୃତି ରୋଗମାନଙ୍କ ସମ୍ବନ୍ଧେ ଖଣ୍ଡେ ଖଣ୍ଡେ ସ୍ୱତନ୍ତ୍ର ପୁସ୍ତକ ଲେଖିଅଛନ୍ତି । ବିଦ୍ୟାରତ୍ନେ ପତ୍ରିକା ପରିଚାଳନା ଭାର ନେଇ ସୁଦ୍ଧା ଭାରତବର୍ଷୀୟ ଦଣ୍ଡବିଧି ଓ କାର୍ଯ୍ୟବିଧି ଆଇନ ପଢ଼ି ଓ ବୁଝି ବାମଣ୍ଡା ମାଜିଷ୍ଟ୍ରେଟ କୋର୍ଟରେ ମଝେ ମଧ୍ୟେ ମୁକ୍ତାରି କରୁଥିଲେ । ଏ କାର୍ଯ୍ୟରେ ସମସ୍ତ ସମୟରେ ଦୁଇ ପଇସା ମିଳୁଥିଲା ସତ୍ୟ; ମାତ୍ର ସାହିତ୍ୟ ଚର୍ଚ୍ଚାକୁ ସମୟାଭାବ ଦେଖି ତହିଁରୁ ବିରତ ହେଲେ ।

କବି ଗଙ୍ଗାଧର ବିଦ୍ୟାରତ୍ନଙ୍କଠାରେ ନାନା ଭାବରେ ଋଣୀ ଥିଲେ । ତତ୍ପ୍ରଣୀତ କେତେକ ପ୍ରାଥମିକ କବିତାର ରସାସ୍ୱାଦନ କରି ବିଦ୍ୟାରତ୍ନ ସେଗୁଡ଼ିକ ପ୍ରଥମେ ତାଙ୍କ ପତ୍ରିକାସ୍ଥ କଲେ ଏବଂ ଗଙ୍ଗାଧରଙ୍କଠାରେ ଯେଉଁ ଶକ୍ତି ନିହିତ ଥିଲା, ତାହାର ଭୂୟସୀ ପ୍ରଶଂସା କଲେ । ବିଦ୍ୟାରତ୍ନଙ୍କର ଏହି ଉତ୍ସାହ ବାଣୀରେ ଗଙ୍ଗାଧର ଉତ୍ସାହିତ ହୋଇ ଇନ୍ଦୁମତୀ, କୀଚକବଧ ପ୍ରଭୃତି ଲେଖିବାକୁ ଆରମ୍ଭ କଲେ । ସେ ଗଙ୍ଗାଧରଙ୍କ ଅସାଧାରଣ ଶକ୍ତିରେ ଚମତ୍କୃତ ହୋଇ ନାନା

ଚେଷ୍ଟାରେ ସେଗୁଡ଼ିକ ପ୍ରକାଶ କରାଇ ଓଡ଼ିଶାବାସୀଙ୍କ ଧନ୍ୟବାଦାର୍ହ ହୋଇ-ଅଛନ୍ତି ।

ଗୁଣଗ୍ରାହୀ ମହାରାଜା ବାସୁଦେବ ୧୮୯୫ ମସିହାରେ ନୀଳମଣିଙ୍କୁ ବାମଣ୍ଡା ଷ୍ଟେଟ କାଉନ୍‌ସିଲର ଅବୈତନିକ ସଦସ୍ୟ ପଦରେ ମନୋନୀତ କରିଥିଲେ । ବାମଣ୍ଡାରେ ନୀଳମଣି ୧୬ ବର୍ଷ କାର୍ଯ୍ୟ କରିଥିଲେ । ସେ ସେଠାରେ ଶିକ୍ଷକ-ସମିତି ଓ ଆଲୋଚନା ସଭା ନାମରେ ଦୁଇଗୋଟି ସଭା ପ୍ରତିଷ୍ଠା କରି ତହିଁରେ ସ୍ୱୟଂ ପ୍ରବନ୍ଧ ପାଠ କରୁଥିଲେ ଓ ବକ୍ତୃତା ପ୍ରଦାନ କରୁଥିଲେ, ଅନ୍ୟମାନଙ୍କୁ ସେହିପରି କରିବାକୁ ଶିକ୍ଷା ଦେଉଥିଲେ ।

ମହାରାଜା ସୁଚଳଦେବ ତାଙ୍କୁ ଗୋଟିଏ ଉପାଧି ଦେବାକୁ ଇଚ୍ଛା ପ୍ରକାଶ କରିବାରୁ ନୀଳମଣି ତହିଁରେ ଅନିଚ୍ଛୁକ ହୋଇ କହିଥିଲେ—"ମୁଁ ଯେଉଁ ଉପାଧି କର୍ମମୟ ଜୀବନର ପ୍ରାକ୍‌କାଳରେ ଲାଭ କରିଅଛି, ତଦ୍ଦ୍ୱାରା ସର୍ବତ୍ର ପରିଚିତ ହେବାକୁ ଇଚ୍ଛାକରେ; ମାତ୍ର ସେ ଉପାଧିଟି ରାଜପରିବାରର ଜନୈକ ସ୍ତ୍ରୀ କର୍ତ୍ତୃକ ପ୍ରଦତ୍ତ । ଆପଣ ଯେବେ ମୋ ପ୍ରତି ସଦୟ ହୋଇଥାନ୍ତି, ତେବେ ସେହି ପଦଟିକୁ ସ୍ୱୀକାର କରି ମୋତେ ସନନ୍ଦ ପ୍ରଦାନ କରନ୍ତୁ ।" ଏହା ଶୁଣି ଗୁଣଗ୍ରାହୀ ମହାରାଜା ଅତୀବ ସନ୍ତୁଷ୍ଟ ହେଲେ ଏବଂ ତାଙ୍କର ପ୍ରିୟ ବିଦ୍ୟାରତ୍ନ ଉପାଧିଟିକୁ ସ୍ୱୟଂ ସ୍ୱୀକାର କରି ତଦନୁରୂପ ସନନ୍ଦ ପ୍ରଦାନ କଲେ ।

ନୀଳମଣି ନାନା ସଦ୍‌ଗୁଣରେ ବିମଣ୍ଡିତ ଥିଲେ । ତାଙ୍କର କର୍ମମୟ ଜୀବନ ଅନୁଧ୍ୟାନ କଲେ କେବଳ କର୍ମହିଁ ମିଳେ । ତାଙ୍କ ମନରେ ଯେତେବେଳେ ଯେଉଁ ସାଧୁ କଳ୍ପନାର ଉଦୟ ହୁଏ, ସେ କଳ୍ପନାକୁ ସେ ବାସ୍ତବରେ ପରିଣତ କରିବା ପାଇଁ ନିଜର ସମଗ୍ର ଶକ୍ତି ପ୍ରୟୋଗ କରୁଥିଲେ । ଦେଶ ପାଇଁ ସେ ଆହାର ନିଦ୍ରା ତ୍ୟାଗ କରୁଥିଲେ, ଶରୀରର ସ୍ୱାସ୍ଥ୍ୟପ୍ରତି ମଧ୍ୟ ଉପେକ୍ଷା ପ୍ରଦର୍ଶନ କରୁଥିଲେ । ସ୍ଥୂଳତଃ ସେ ନିଜର ପ୍ରାଣକୁ ଦେଶ ସଙ୍ଗରେ ମିଶାଇ ଦେଇଥିଲେ । ଦେଶର ପ୍ରତ୍ୟେକ ମହଦନୁଷ୍ଠାନ ମୂଳରେ ତାଙ୍କର ଚିନ୍ତାଯତ୍ନ ବିଦ୍ୟମାନ ।

ନୀଳମଣିଙ୍କର ଆତିଥେୟତା ସର୍ବଜନ ପ୍ରଶଂସିତ । ଏତେ ସଦ୍‌ଗୁଣସତ୍ତ୍ୱେ ତାଙ୍କଠାରେ କେତେକ ଗୁରୁତର ଦୋଷ ମଧ୍ୟ ପ୍ରବେଶ କରିଥିଲା । ବ୍ୟକ୍ତିବିଶେଷଙ୍କ ଜୀବନଚରିତ ଆଲୋଚନା କଲେ ସତ୍ୟର ଅନୁରୋଧରେ ଦୋଷ ଗୁଣ ଉଭୟ ପକ୍ଷ ଦେଖାଇବା ଆବଶ୍ୟକ । ଅନ୍ୟଥା ସତ୍ୟର ଅପଳାପ ଘଟେ । ଜଟିଳ ଚିନ୍ତା ଓ ଗଭୀର ଗବେଷଣା ହେତୁ ନୀଳମଣି ଅବସନ୍ନ ହୋଇପଡ଼ୁଥିଲେ । ସେହି ଅବସନ୍ନତା ନିବାରଣ ସକାଶେ ତାଙ୍କ ବନ୍ଧୁବାନ୍ଧବମାନଙ୍କ ଉପଦେଶରେ ସେ ପାନ ଦୋଷରେ ଅଭ୍ୟସ୍ତ ହୋଇପଡ଼ିଲେ । ବହୁଚେଷ୍ଟା ସତ୍ତ୍ୱେ ସେ ତାହା ଛାଡ଼ିପାରି ନଥିଲେ । ସେଥିପାଇଁ ସେ ବେଳେ ବେଳେ କ୍ଷୋଭ ଓ ଦୁଃଖ ପ୍ରକାଶ କରୁଥିଲେ; କିନ୍ତୁ

ଅଭ୍ୟାସର ପରିପକ୍ୱତା ହେତୁ ସେ ତାହା ଛାଡ଼ିପାରିଲେ ନାହିଁ । ଚନ୍ଦ୍ରର କଳଙ୍କ ପରି ଏ ଦୋଷଟି ପାଇଁ ତାଙ୍କୁ ଅନେକ ସମୟରେ ଦାରୁଣ ଅର୍ଥାଭାବ ଭୋଗ କରିବାକୁ ପଡ଼ୁଥିଲା । ସେଥିପାଇଁ ଶେଷଜୀବନ ପର୍ଯ୍ୟନ୍ତ ସେ ବିଶେଷ ଅନୁତପ୍ତ ଥିଲେ । ପାନ ଦୋଷ ତାଙ୍କ ଚରିତ୍ରକୁ କଳୁଷିତ କରିପାରି ନ ଥିଲା, ଏହା ତାଙ୍କ ଶତ୍ରୁମାନେ ସୁଦ୍ଧା ମୁକ୍ତକଣ୍ଠରେ ସ୍ୱୀକାର କରିବେ । ତଥାପି ଆଦର୍ଶ ଏବଂ ନୀତି-ଦୃଷ୍ଟିରେ ଏଭଳି କୁଅଭ୍ୟାସ ସମର୍ଥନୀୟ ନୁହେଁ ।

ନୀଳମଣି ନାନାଭାବରେ ଯଥେଷ୍ଟ ଆୟ କରୁଥିଲେହେଁ ଅମିତବ୍ୟୟିତା ହେତୁ ସେ ବେଳେ ବେଳେ ବହୁତ କଷ୍ଟ ଭୋଗ କରୁଥିଲେ । କ୍ରମେ ତାଙ୍କର ଏହି ଅମିତବ୍ୟୟିତାର କାରଣ ସୁଢଳଦେବଙ୍କର କର୍ଣ୍ଣଗୋଚର ହେଲା । ସେ ତାଙ୍କୁ ମିତବ୍ୟୟୀ ହେବାକୁ ଉପଦେଶ ଦେଲେ; ମାତ୍ର ସେ ସମସ୍ତ ବ୍ୟର୍ଥ ହେଲା । ସେ ମହାରାଜାଙ୍କ ଅଜ୍ଞାତରେ 'ସମ୍ବଲପୁର ହିତୈଷିଣୀ' ଆୟରୁ ତିନିଶତ ଟଙ୍କା ଖରଚ କରିପକାଇଥିଲେ । ମହାରାଜା ଏହି କଥା ଶ୍ରବଣ କରି ତାଙ୍କୁ ସତ୍ପଥରେ ପରିଚାଳିତ କରିବାପାଇଁ ଅନତିବିଳମ୍ବରେ ଏକ ସପ୍ତାହ ମଧ୍ୟରେ ଟଙ୍କା ରାଜକୋଷରେ ଜମା ଦେବା ନିମିତ୍ତ ଆଦେଶ ଦେଲେ ଏବଂ ତାହା ନ କଲେ ନିୟମାନୁସାରେ ରାଜଦଣ୍ଡ ଭୋଗ କରିବାକୁ ହେବ ବୋଲି ଭୀତି ପ୍ରଦର୍ଶନ କଲେ । ଏଥିରେ ନୀଳମଣି କିଂକର୍ତ୍ତବ୍ୟବିମୂଢ଼ ହୋଇ ସ୍ୱର୍ଗତ କବିବର ରାଧାନାଥଙ୍କୁ ଏହି ସମ୍ବାଦ ପ୍ରଦାନ କଲେ ଏବଂ ଲେଖିଲେ ଯେ, "ଏକ ସପ୍ତାହ ମଧ୍ୟରେ ତିନିଶତ ଟଙ୍କା ପ୍ରଦାନ କରି ନ ପାରିଲେ ମୁଁ କାରାଦଣ୍ଡ ଭୋଗ କରିବି ।" ପରଦୁଃଖକାତର ରାଧାନାଥ ପତ୍ରପ୍ରାପ୍ତି ମାତ୍ରକେ ମନିଅର୍ଡ଼ର ଦ୍ୱାରା ତିନିଶତ ଟଙ୍କା ପ୍ରେରଣ କରି ତାଙ୍କୁ ଏହି ବିପଦରୁ ରକ୍ଷା କରିଥିଲେ ।

ନୀଳମଣି ୧୯୦୨ ମସିହାରେ ବାମଣ୍ଡା ତ୍ୟାଗ କରି ଖଲ୍ଲିକୋଟରେ ଉପସ୍ଥିତ ହେଲେ । ସେତେବେଳେ ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜ ଦେବ ଦେଶସେବା ଓ ପରହିତ ବ୍ରତରେ ଗଞ୍ଜାମର ରାଜନ୍ୟବର୍ଗଙ୍କ ମଧ୍ୟରେ ଆଦର୍ଶ ଥିଲେ । ଚିଲିକା ତୀରବର୍ତ୍ତୀ ରମ୍ଭା ନଗରୀରେ ସେ ଗୋଟିଏ ରମଣୀୟ ପ୍ରାସାଦ ନିର୍ମାଣ କରି ସ୍ୱୀୟ ଶୋଭାନୁଭାବୁକତା ଓ ବିଭବଶାଳିତାର ପ୍ରମାଣ ପ୍ରଦାନ କରିଯାଇଅଛନ୍ତି । ସାହିତ୍ୟସେବା ଓ ସମ୍ବାଦପତ୍ର ପରିଚାଳନା ଦ୍ୱାରା ଦେଶସେବା କରିବା ଉଦ୍ଦେଶ୍ୟରେ ସେ ସେହି ରମ୍ଭାରେ ଗୋଟିଏ ପ୍ରେସ ପ୍ରତିଷ୍ଠିତ କରି ତାହାର ପରିଚାଳନା ନିମିତ୍ତ ନୀଳମଣିଙ୍କୁ ନିଯୁକ୍ତ କଲେ । ସେ ରମ୍ଭାରେ କାର୍ଯ୍ୟଭାର ଗ୍ରହଣ କରି ଅଦମ୍ୟ ଉତ୍ସାହସହକାରେ 'ପ୍ରଜାବନ୍ଧୁ' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ କଲେ । ୧୯୦୨ ମସିହା ଜୁନ୍ ୨୫ ତାରିଖ ବୁଧବାର

ହିନ ପ୍ରଜାବନ୍ଧୁ ପତ୍ରିକା ସର୍ବପ୍ରଥମେ ପ୍ରକାଶିତ ହେଲା । ସେ ପ୍ରଜାବନ୍ଧୁରେ ଆଲୋଚନା କରିବା ନିମନ୍ତେ ଯାହା ସ୍ଥିର କରିଥିଲେ, ତାହା ସେହି ପତ୍ରିକାର ଶୀର୍ଷଦେଶରେ ଲେଖାହୋଇଥିଲା । ତାହା ଏହି—

“ହିତକଥା ଶୁଭବାର୍ତ୍ତା ସର୍ବସମାଚାର,
କରିବ ଏ ‘ପ୍ରଜାବନ୍ଧୁ’ ଉତ୍କଳେ ପ୍ରଚାର ।
ନିୟତ କାମନା କରି ସ୍ୱଦେଶର ହିତ,
ରାଜାଙ୍କର ହେଉ ମନ୍ତ୍ରୀ ପ୍ରଜାଙ୍କର ମିତ୍ର ।
ନ୍ୟାୟଦେବଙ୍କର କରି ନିତ୍ୟ ସେବକତା,
କରୁ ପ୍ରଜାବନ୍ଧୁ ନିଜ ନାମ ସାର୍ଥକତା ।
ହେଉ ସ୍ୱଦେଶର ଏହା ନିତ୍ୟ ଶ୍ରଦ୍ଧାସ୍ଥଳ,
ଜଗଦୀଶ କରନ୍ତୁ ଏ ବାସନା ସଫଳ ।”

‘ସମ୍ବଲପୁର ହିତୈଷିଣୀ’ ପରି ସେ ପ୍ରଜାବନ୍ଧୁରେ ପ୍ରବନ୍ଧାଦି ଲେଖିବା ପାଇଁ ଉତ୍କଳର ବିଭିନ୍ନ ଶ୍ରେଣୀର ଲେଖକଙ୍କୁ ଅନୁରୋଧ କଲେ । ପ୍ରଜାବନ୍ଧୁ ଅତି ଅଳ୍ପକାଳ ମଧ୍ୟରେ ଓଡ଼ିଶାରେ ଗୋଟିଏ ପ୍ରଧାନ ପତ୍ରିକାରେ ପରିଣତ ହେଲା । ଅନେକ ଅପରିପକ୍ୱ ଯୁବକ ଲେଖକଙ୍କୁ ପ୍ରଜାବନ୍ଧୁ ସୁଲେଖକରେ ପରିଣତ କରିଅଛି । ସ୍ୱର୍ଗତ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ ସାହିତ୍ୟକ୍ଷେତ୍ରରେ ସୁପରିଚିତ ହେବା ପୂର୍ବରୁ ପ୍ରଜାବନ୍ଧୁ ପତ୍ରିକାର ଜଣେ ନିୟମିତ ଲେଖକ ଥିଲେ । ରାଜପୁରୁଷମାନେ ପ୍ରଜାବନ୍ଧୁର ଯୁକ୍ତିପୂର୍ଣ୍ଣ ପ୍ରବନ୍ଧାବଳୀ ପାଠ କରି ଉତ୍କଳର ନାନା ଅଭାବ ଅସୁବିଧା ଦୂର କରୁଥିଲେ । ଅନେକ ଅତ୍ୟାଗ୍ରହୀ ପ୍ରଜାବନ୍ଧୁର ତୀବ୍ର ସମାଲୋଚନା ଭୟରେ ସୁପଥଗାମୀ ହୋଇଅଛନ୍ତି । ସ୍ଥୂଳତଃ କହିବାକୁ ଗଲେ ପ୍ରଜାବନ୍ଧୁ ପରି ସୁଖପାଠ୍ୟ ପତ୍ରିକା ଓଡ଼ିଶା ପ୍ରଦେଶରେ ଅତ୍ୟଳ୍ପ ପ୍ରକାଶିତ ହୋଇଅଛି । ନୀଳମଣି ଗଞ୍ଜାମ ଜିଲ୍ଲାର ଭିନ୍ନ ଭିନ୍ନ ଅଞ୍ଚଳରେ ‘ପ୍ରଜାବନ୍ଧୁ ସମିତି’ ନାମରେ ଅନେକ ସମିତି ପ୍ରତିଷ୍ଠା କରି ତେଲଙ୍ଗାମାନଙ୍କଦ୍ୱାରା ଉତ୍ପୀଡ଼ିତ ଓଡ଼ିଆମାନଙ୍କର ନ୍ୟାଯ୍ୟ ଅଧିକାର ବିଷୟ ପ୍ରଜାବନ୍ଧୁ ପତ୍ରିକା ସାହାଯ୍ୟରେ ସରକାରଙ୍କର କର୍ଣ୍ଣଗୋଚର କରାଉଥିଲେ ।

ନୀଳମଣି ଗଞ୍ଜାମ ଜିଲ୍ଲାକୁ ଓଡ଼ିଶାର ଅନ୍ତର୍ଭୁକ୍ତ କରିବା ପାଇଁ ପ୍ରଥମେ ପ୍ରଜାବନ୍ଧୁରେ ଆନ୍ଦୋଳନ ଆରମ୍ଭ କଲେ ଏବଂ ସେହି ଉଦ୍ଦେଶ୍ୟର ବଶବର୍ତ୍ତୀ ହୋଇ ୧୯୦୩ ମସିହା ଏପ୍ରେଲ୍‌ରେ ଗଞ୍ଜାମ ସମ୍ମିଳନୀର ସୂତ୍ରପାତ କଲେ । ବ୍ରହ୍ମପୁରରେ ସମ୍ମିଳନୀର ବିପୁଳ ଆୟୋଜନ ହେଲା । ସୁବିସ୍ତୃତ ଗଞ୍ଜାମ ରାଜ୍ୟରୁ ବହୁ ପ୍ରତିନିଧି ସଭାକୁ ନିମନ୍ତ୍ରିତ ହେଲେ । ଓଡ଼ିଶାରୁ ବହୁ ବିଶିଷ୍ଟ ବ୍ୟକ୍ତି ସେଥିରେ ଯୋଗ ଦେବା ପାଇଁ ଆହୂତ ହୋଇଥିଲେ । ସେ ସମୟରେ ଦେଶପ୍ରାଣ

ମଧୁସୂଦନ ଦାସ ସି. ଆଇ. ଇ. କଲିକତାରେ ଅବସ୍ଥାନ କରୁଥିଲେ । ସେ ତାର ଖବର ପାଇ ଠିକ୍ ସମୟରେ ବ୍ରହ୍ମପୁରରେ ଉପସ୍ଥିତ ହେଲେ । ଦାସ ମହାଶୟ ଏହି ସମ୍ମିଳନୀର ପ୍ରୟୋଜନୀୟତା ହୃଦୟଙ୍ଗମ କରି ସମସ୍ତ ଉତ୍କଳଭାଷୀ ପ୍ରଦେଶରେ ସମ୍ମିଳନୀ ପ୍ରତିଷ୍ଠା କରିବା ପାଇଁ ବଦ୍ଧପରିକର ହେଲେ ଏବଂ ଅକ୍ଲାନ୍ତ ପରିଶ୍ରମ ଓ ଅଦମ୍ୟ ଅଧ୍ୟବସାୟ ସାହାଯ୍ୟରେ ଉତ୍କଳ ସମ୍ମିଳନୀର ସୂତ୍ରପାତ କଲେ । ୧୯୦୩ ମସିହା ଡିସେମ୍ବରରେ କଟକ ନଗରୀରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ହୋଇଥିଲା । ସମ୍ମିଳନୀ ଆଉ କିଛି ନ କରିଥିଲେ ମଧ୍ୟ ସମସ୍ତ ଓଡ଼ିଆଜାତିର ଜୀବନୀ ଶକ୍ତିକୁ ଭାରତରେ ପ୍ରତିଷ୍ଠିତ କରିଅଛି, ଏହା କେହି ଅସ୍ୱୀକାର କରିବେ ନାହିଁ ।

ପ୍ରଜାବନ୍ଧୁ ପତ୍ରିକା ବାହାରୁଥିବା ସମୟରେ ରମ୍ଭାରୁ 'ସଂସ୍କାରକ' ନାମରେ ଆଉ ଖଣ୍ଡିଏ ପତ୍ରିକା ପ୍ରକାଶିତ ହେଉଥିଲା । ବିଦ୍ୟାରତ୍ନଙ୍କ ସମ୍ପାଦକତାରେ 'ଉତ୍କଳ-ମଧୁପ' ନାମରେ ଖଣ୍ଡିଏ ବିବିଧ ଜ୍ଞାତବ୍ୟ ମାସିକ ପତ୍ରିକା ମଧ୍ୟ ପ୍ରଚ୍ଚରିତ ହେଉଥିଲା । ବିଦ୍ୟାରତ୍ନ ପ୍ରଜାବନ୍ଧୁ ପ୍ରକାଶ ସମୟରେ ଦେଶ ସମ୍ବନ୍ଧେ ଯାହା ଯାହା କରିଅଛନ୍ତି, ସେ ସମୁଦାୟ ବର୍ଣ୍ଣନା କଲେ ଏକ ପ୍ରକାଣ୍ଡ ପୁସ୍ତକ ହେବ, ତଥାପି ପାଠକମାନଙ୍କ ଅବଗତି ନିମନ୍ତେ କେତେକ କାର୍ଯ୍ୟର ଆଭାସମାତ୍ର ଦିଆହେଉଅଛି ।

ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ଉତ୍କଳର ଜଣେ ଅସାଧାରଣ ପ୍ରତିଭାଶାଳୀ ସୁପଣ୍ଡିତ । ତାଙ୍କ ପ୍ରଣୀତ 'ସିଦ୍ଧାନ୍ତ ଦର୍ପଣ' ତାଙ୍କ ପ୍ରତିଭାର ପୂର୍ଣ୍ଣ ନିଦର୍ଶନ । ତାହାଙ୍କର ଗଣିତ-ପଞ୍ଜିକା ଉତ୍କଳର ଗୃହେ ଗୃହେ ସମାଦୃତ । ତାଙ୍କର ଆର୍ଥିକ ଅବସ୍ଥା ଅସ୍ୱଚ୍ଛଳ ହେତୁ ସେ ସର୍ବଦା ଗ୍ରାସାଚ୍ଛାଦନ ବିଷୟରେ ଦାରୁଣ କଷ୍ଟ ଭୋଗ କରୁଥିବାର ଅବଗତ ହୋଇ ବିଦ୍ୟାରତ୍ନେ ୧୯୦୨ ମସିହା ଅକ୍ଟୋବର ୮ ତାରିଖରେ ସ୍ୱବ୍ୟୟରେ ଛନଶତ କାର୍ଡ଼ ମୁଦ୍ରିତ କରାଇ ତାହା ଦେଶର ସଙ୍ଗତିସମ୍ପନ୍ନ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କଠାକୁ ପ୍ରେରଣପୂର୍ବକ ସାହାଯ୍ୟ ପ୍ରାର୍ଥନା କଲେ । ସେ ତହିଁରେ ଲେଖିଥିଲେ—"ସିଦ୍ଧାନ୍ତଦର୍ପଣ-ପ୍ରଣେତା ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ଯେପରି ମହାପଣ୍ଡିତ, ସେହିପରି ମହାଦରିଦ୍ର ଓ ମହାବୃଦ୍ଧ । ସେ ଚିରରୋଗୀ ଏବଂ ଦରିଦ୍ର ଥିବାହେତୁ ବୃଦ୍ଧ କାଳରେ ଦୁର୍ବିସହ ଯାତନା ଭୋଗ କରୁଅଛନ୍ତି । ଉତ୍କଳରେ ଗୁଣଗ୍ରାହୀ ଦାନଶୀଳ ରାଜା, ଜମିଦାର, ଧନୀ ଓ ଶିକ୍ଷିତ ଲୋକ ଥାଉଁ ଥାଉଁ ସେ ଏପରି କଷ୍ଟ ଭୋଗ କରୁଥିବା ସେମାନଙ୍କ ପକ୍ଷରେ ଏବଂ ଦେଶ ପକ୍ଷରେ ଗଭୀର କଳଙ୍କର ବିଷୟ । ଏହି କଳଙ୍କ କ୍ଷାଳନ ନିମିତ୍ତ ତାଙ୍କ ପାଇଁ ଚାନ୍ଦା ସଂଗ୍ରହ କରିବାକୁ ପ୍ରବୃତ୍ତ ହୋଇଅଛୁଁ । ଭରସା କରୁଁ, ଆପଣ ଯଥାସାଧ୍ୟ ଚାନ୍ଦା ଅଙ୍ଗୀକାର କରିବା

ହେବେ ଏବଂ ସୃନ୍ଦା ଦେବାସବାଶେ ଅନ୍ୟ ନ୍ୟ ଲୋକଙ୍କର ପ୍ରବୃତ୍ତ ଜନ୍ମାଇବା ହେବେ । ସୃନ୍ଦାଦାତାମାନଙ୍କର ନାମ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେବ । ବର୍ତ୍ତମାନ ଟଙ୍କା ପଠାଇବାର ଆବଶ୍ୟକତା ନାହିଁ । କଏ କ ପରିମାଣରେ ଅର୍ଥ ସାହାଯ୍ୟ କରବେ, ତାହା ଜଣାହେଲାରୁ ପରେ କେଉଁ ଠିକଣାରେ ଏବଂ କାହା ନାମରେ ଟଙ୍କା ପଠାଇବାକୁ ହେବ, ଜଣାଇଦଆହେବ । ନବେଦକ ଶ୍ରୀ ନୀଳମଣି ବଦ୍ୟାରତ୍ନ ।” ନୀଳମଣିଙ୍କର ଏ ସାଧୁ ଚେଷ୍ଟାରେ ପ୍ରାୟ ସହସ୍ରାଧିକ ଟଙ୍କା ସଂଗୃହୀତ ଓ ପ୍ରେରତ ହୋଇ ତାଙ୍କ ଅନ୍ତମକାଳରେ ଚନ୍ଦ୍ରଶେଖରଙ୍କର ମହୋପକାର ସାଧନ କରଥିଲା ।

ସମ୍ବଲପୁରରୁ ଓଡ଼ିଆ ଭାଷା ହଟାଇ ଦଆହୋଇ ହନ୍ଦୀ ଭାଷା ପ୍ରଚଳନ କରାହେବାରୁ ଉତ୍କଳଭାଷାର ପୁନଃପ୍ରତଷ୍ଠା ନମନ୍ତେ ବଦ୍ୟାରତ୍ନେ ତାଙ୍କ ଉତ୍କଳହିତୈଷିଣୀ ପତ୍ରିକାରେ ବର୍ଷବ୍ୟାପୀ ତୁମୁଳ ଆନ୍ଦୋଳନ ଲଗାଇ ଫକୀରମୋହନ ସେନାପତି ଓ କଟକର ଗୌରୀଶଙ୍କର ରାୟ ମହାଶୟ 'ଉତ୍କଳଦୀପିକା'ରେ ଏବଂ ବାଲେଶ୍ୱରର ଶ୍ରୀଯୁକ୍ତ ଫକୀରମୋହନ ଖଲ୍ଲିକୋଟ ବାହାର ଅସି 'ପ୍ରଜାବନ୍ଧୁ'ରେ ସେହି ଆନ୍ଦୋଳନ ପୁନରୁଜ୍ଜୀବିତ କଲେ । ମଧ୍ୟପ୍ରଦେଶର ଚୀଫ୍ କମିଶନର ମାନ୍ୟବର ଫ୍ରେଜର ସାହେବଙ୍କ ସୁପାରଶ ଓ ବଡ଼ଲାଟଙ୍କ ନ୍ୟାୟବଚାରରେ ସେଠାରୁ ହନ୍ଦୀଭାଷା ବତାଡ଼ିତ ହେବାରୁ ସମ୍ବଲପୁରବାସୀ ବଦ୍ୟାରତ୍ନଙ୍କୁ ଅଜସ୍ର ଧନ୍ୟବାଦ ପ୍ରଦାନ କରଥିଲେ । ୧୯୦୩ ମସିହା ଜାନୁଆରୀ ଏକ ତାରଖଠାରୁ ସମ୍ବଲପୁର ଅଦାଲତରେ ଓଡ଼ିଆ-ଭାଷା ପ୍ରଚଳତ ହେଲା ।

ନୀଳମଣି ପୁରୀରେ ବଧବାଶ୍ରମ ସ୍ଥାପନ ବଷୟରେ ଚେଷ୍ଟା କରବା ନମନ୍ତେ ପୁରୀମନ୍ଦରର ମେନେଜର ଶ୍ରୀଯୁକ୍ତ ରାଜକଶୋର ଦାସ, ବି. ଏ. ଙ୍କୁ ଅନୁରୋଧ କରଥିଲେ । ଏହି ଆଶ୍ରମ ସ୍ଥାପନ ନମନ୍ତେ ଶ୍ରୀଯୁକ୍ତ ଶ୍ରୀବତ୍ସ ପଣ୍ଡା, ବି. ଏ. ଏକସହସ୍ର ମୁଦ୍ରା ଦେବାକୁ ଅଙ୍ଗୀକାର କରଥିଲେ ଏବଂ ମାନନୀୟ ମୟୂରଭଞ୍ଜ ମହାରାଜା ପନ୍ଦରଶତ ମୁଦ୍ରା ଦେବାକୁ ସ୍ୱୀକୃତ ହୋଇ ଯେଉଁ ପତ୍ର ଲେଖିଥିଲେ, ତାହା ଏହି, ମାନ୍ୟବରେଷୁ, "ଆପଣଙ୍କ ୧୪ ତାରଖର ଚିଠି ପାଇଲି । ପୁରୀରେ ବଧବାଶ୍ରମ ସ୍ଥାପନ କରବା ପାଇଁ ଆପଣ ଯାହା ଲେଖିଅଛନ୍ତି, ସେଥିରେ ମୋର ସମ୍ପୂର୍ଣ୍ଣ ସହାନୁଭୂତି ଅଛି । ଏପର ଆଶ୍ରମ ସ୍ଥାପନ କରବା ପାଇଁ କେତେ ଟଙ୍କା ଆବଶ୍ୟକ ଓ ସ୍ଥାପନ ହେଲା ପରେ କପର ସଂରକ୍ଷଣ ଓ ତତ୍ତ୍ୱାବଧାରଣ ହେବ, ତାହା ଜାଣିବା ଆବଶ୍ୟକ । ଏ ସମ୍ବନ୍ଧରେ ଆପଣ ଯଦ ବଜ୍ଞାପନ କମ୍ବା ପ୍ରସ୍ତାବ ଛପାଇ ବତରଣ କରନ୍ତି, ତାହାହେଲେ ଉତ୍ତମ ହେବ । ଆବାସଗୃହ ନର୍ମାଣ ନମନ୍ତେ ଯଦ ଆବଶ୍ୟକ ମୁଦ୍ରା ଜନସାଧାରଣରେ ସ୍ୱାକ୍ଷରତ ହୁଏ, ତାହାହେଲେ ଆଗାମୀ ଏପ୍ରେଲରେ ମୁଁ ଏଥିପାଇଁ ପନ୍ଦର ଶତ ଟଙ୍କା ଦେବା ପାଇଁ ସ୍ୱୀକୃତ ହେଉଅଛି । ୧୭।୮।୧୯୦୪, ନବେଦକ ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବ, ମୟୂରଭଞ୍ଜ ।"

ନୀଳମଣି ଯେ କୌଣସି ସଭା ସମିତି ହେଲେ ଆଦରର ସହିତ ସେଥିରେ ଯୋଗଦାନ କରୁଥିଲେ । ସେ ସଭା ସମିତିରେ ଯୋଗ ଦେବା ସକାଶେ ପୁରୀ, ବାଲେଶ୍ୱର, କଟକ, ସମ୍ବଲପୁର, ଚନ୍ଦ୍ରଧରପୁର ଆଦି ସ୍ଥାନକୁ ଗମନ କରୁଥିଲେ । ସେ 'ଖଲ୍ଲିକୋଟ ବ୍ରାହ୍ମଣ ସମିତି' ସ୍ଥାପନର ପ୍ରଧାନତମ ଉଦ୍ୟୋଗୀ ଥିଲେ । ୧୯୦୫ ମସିହା ଜୁଲାଇ ୧୫ ତାରିଖରେ ସେହି ସମିତିର ଗୋଟିଏ ଅଧିବେଶନରେ କେତେକ ପ୍ରସ୍ତାବ ଉପସ୍ଥାପିତ କରିଥିଲେ । ନାନା ତର୍କବିତର୍କ ପରେ ନିମ୍ନଲିଖିତ ପ୍ରସ୍ତାବ ଗୃହୀତ ହୋଇଥିଲା ।

୧ । କନ୍ୟା ଶୁଳ୍କ ନିବାରଣ ଚେଷ୍ଟା ।

୨ । କନ୍ୟାମାନଙ୍କୁ ଦ୍ୱାଦଶବର୍ଷ ( ଋତୁମତୀର ପୂର୍ବକାଳ ) ପର୍ଯ୍ୟନ୍ତ ଅବିବାହିତାବସ୍ଥାରେ ରଖାହେବ ।

୩ । ବାଳକବାଳିକାଙ୍କ ଶିକ୍ଷୋନ୍ନତିର ଚେଷ୍ଟା ।

୪ । କୁଟୁମ୍ବ ଓ ଜ୍ଞାତି ଭିନ୍ନ ସଦାଚାରସମ୍ପନ୍ନ ଅନ୍ୟ ବ୍ରାହ୍ମଣଘରେ ଭୋଜନ କରିବାର ରୀତି ପ୍ରଚଳନ ।

୫ । ଅନିମନ୍ତ୍ରିତ ଭାବରେ କ୍ରିୟାକର୍ତ୍ତାଗୃହରେ ଉପସ୍ଥିତ ହେବା ନିବାରଣ ।

୬ । ଗୋ-ଖାଦକମାନଙ୍କୁ ବୃଦ୍ଧ ଗୋରୁ ବିକ୍ରୟ ପ୍ରଥା ରହିତ ହେବା, କେହି ସେପରି କଲେ ସମାଜଚ୍ୟୁତ କରାହେବା ।

ବିଦ୍ୟାରତ୍ନେ ଗୌରବାସ୍ପଦ ବ୍ୟକ୍ତିଙ୍କୁ ଗୌରବ କରୁଥିଲେ । ବିଶ୍ୱନାଥ ମିଶ୍ର ବାରିଷ୍ଟର ପାସ୍ କରି ପ୍ରତ୍ୟାବୃତ୍ତ ହେଲା ପରେ କେତେକ ବନ୍ଧୁଙ୍କୁ ଆହ୍ୱାନ କରି ବିଦ୍ୟାରତ୍ନ ତାଙ୍କୁ ଅଭିନନ୍ଦିତ କରିଥିଲେ । ସମୁଦ୍ରଯାତ୍ରା ଦୋଷାବହ ନୁହେଁ, ପୂର୍ବରୁ ପ୍ରଚଳିତ ଥିଲା ଇତ୍ୟାଦି ପତ୍ରିକାରେ ଆନ୍ଦୋଳନ କରି 'ସମୁଦ୍ରଯାତ୍ରା ବିଚାର' ନାମରେ ଖଣ୍ଡିଏ ପୁସ୍ତକ ସେ ପ୍ରକାଶ କରିଥିଲେ ।

ଶ୍ରୀମତୀ ନାୟିକାବ ଅନ୍ନପୂର୍ଣ୍ଣାଙ୍କୁ ସାହାଯ୍ୟ କରିବା ସକାଶେ ନୀଳମଣି ଉତ୍କଳର ରାଜା, ଜମିଦାର ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ନିକଟରେ ପ୍ରାର୍ଥନା କରି-ଥିଲେ । ଅନ୍ନପୂର୍ଣ୍ଣା ତଦନୁସାରେ ଅନେକଙ୍କଠାରୁ ଅର୍ଥ ସାହାଯ୍ୟ ଲାଭ କରିଥିଲେ ।

ଗଞ୍ଜାମ ଜିଲ୍ଲାର ଓଡ଼ିଆ ସ୍କୁଲମାନଙ୍କରେ ଓଡ଼ିଆରେ ଅଙ୍କ ଲେଖିବାର ରୀତି ନ ଥିଲା । ପୁଣି ଓଡ଼ିଶା ରୀତିରେ ପଣକିଆ ଶିକ୍ଷା ଦିଆହେଉ ନ ଥିଲା । ଯାହା ଶିକ୍ଷା ଦିଆହେଉଥିଲା, ତାହା ଅସମ୍ପୂର୍ଣ୍ଣ । ପଣକିଆ ଗଣିତ ଜ୍ଞାନର ମୂଳଭିତ୍ତି ହୋଇଥିବାଠାରେ ତାହାକୁ ଏପରି ଅସମ୍ପୂର୍ଣ୍ଣ ଭାବରେ ଶିକ୍ଷା ଦେବାରେ କ୍ଷତି ଭିନ୍ନ

ନୀଳମଣିଙ୍କ ଅକ୍ଳାନ୍ତ କର୍ମମୟ ଜୀବନ ଅନୁଧ୍ୟାନ କଲେ କେବଳ କର୍ମହିଁ ମିଳେ । ତାଙ୍କ ମନରେ ଯେତେବେଳେ ଯେଉଁ ସାଧୁ କଳ୍ପନାର ଉଦ୍ଭବ ହୁଏ, ସେ କଳ୍ପନାକୁ ସେ ବାସ୍ତବରେ ପରିଣତ କରିବା ପାଇଁ ନିଜର ସମସ୍ତ ଶକ୍ତି ପ୍ରୟୋଗ କରନ୍ତି । ଦେଶ ପାଇଁ ସେ ଆହାରନିଦ୍ରା ତ୍ୟାଗ କରୁଥିଲେ, ଶରୀରର ସ୍ୱାସ୍ଥ୍ୟପ୍ରତି ମଧ୍ୟ ଉପେକ୍ଷା ପ୍ରଦର୍ଶନ କରୁଥିଲେ । ସ୍ଥୂଳତଃ ସେ ନିଜର ପ୍ରାଣକୁ ଦେଶ ସଙ୍ଗରେ ମିଶାଇଦେଇଥିଲେ । ଦେଶର ପ୍ରତ୍ୟେକ ମହତାନୁଷ୍ଠାନ ମୂଳରେ ତାଙ୍କର ଚିନ୍ତା, ଯତ୍ନ, ଚେଷ୍ଟା ବିଦ୍ୟମାନ ।

ସମ୍ବଲପୁରବାସୀ ବହୁକାଳ ପରେ ସ୍ୱୀୟ ମହିମାମୟୀ ମାତୃଭୂମିକୁ ଯେପରି ପାଇଅଛନ୍ତି, ସେ ଆନ୍ଦୋଳନ ମୂଳରେ ନୀଳମଣିଙ୍କ କର୍ମନିପୁଣ ହସ୍ତ ବିଦ୍ୟମାନ ଥିଲା । ଯେଉଁ ଉତ୍କଳ-ସମ୍ମିଳନୀ ଯୋଗୁଁ ଓଡ଼ିଆ ଜାତିର ଅସାର ପ୍ରାଣରେ ସ୍ପନ୍ଦନ ଏବଂ ଆକାଙ୍‌କ୍ଷା ଜାତ ହୋଇଅଛି, ସେହି ଉତ୍କଳ ମହାସମ୍ମିଳନୀ ନୀଳମଣିଙ୍କର ମାନସୀକନ୍ୟା । ଦେଶ ସକାଶେ ସେ ବିପଦର ସମ୍ମୁଖୀନ ହୋଇ ବିପଦ ସଙ୍ଗରେ ଯୁଦ୍ଧ କରିବାକୁ ପଶ୍ଚାତ୍ପଦ ହେଉ ନ ଥିଲେ । ଗଞ୍ଜାମମିଶ୍ରଣ ଆନ୍ଦୋଳନ ସମୟରେ ତେଲଙ୍ଗାମାନେ ତାଙ୍କୁ ବିପନ୍ନ କରିବାକୁ ଚେଷ୍ଟା କରିଥିଲେ ମାତ୍ର ସେ ସେଥିରେ ଭୀତ ହୋଇ ଲକ୍ଷ୍ୟଚ୍ୟୁତ ହୋଇ ନ ଥିଲେ । ସ୍ପଷ୍ଟବାଦିତା, ନୈତିକ ସାହସ ଓ ପରୋପକାରିତା ଦ୍ୱାରା ତାଙ୍କର ଚରିତ୍ର ଅଳଙ୍କୃତ ଥିଲା । ଶ୍ଳେଷଭଙ୍ଗୀରେ କଥା କହି ବା ମୁରବିଆନା ଦେଖାଇ ସେ ନିଜକୁ ବଡ଼ ମଣୁ ନ ଥିଲେ । ତାଙ୍କର ବିପୁଳ ପ୍ରତିଭା ଓ କର୍ମଚାତୁର୍ଯ୍ୟ ତାଙ୍କୁ ବଡ଼ପଦକୁ ଉନ୍ନୀତ କରାଇଥିଲା । ସେ ପିଲା ପାଖରେ ପିଲା, ଯୁବକ ପାଖରେ ଯୁବକ ଏବଂ ବୃଦ୍ଧ ପାଖରେ ବୃଦ୍ଧ । ତାଙ୍କର ଏହି ସରଳ ବ୍ୟବହାରର ମଧୁରିମା କେବଳ ଉପଭୋଗ୍ୟ ନୁହେଁ—ଅନୁକରଣୀୟ ।

ନୀଳମଣିଙ୍କର ବନ୍ଧୁବାତ୍ସଲ୍ୟ ଅତୁଳନୀୟ । ସେ ସମଗ୍ର ଉତ୍କଳରୁ ଯଥେଷ୍ଟ ବନ୍ଧୁ ସଂଗ୍ରହ କରିପାରିଥିଲେ । ତାଙ୍କର ବନ୍ଧୁ ସଂଗ୍ରହ ଉପକାର ପ୍ରାପ୍ତ୍ୟାଶା ମୂଳକ ନୁହେଁ ସେ ଉପକାର ବାଣ୍ଟିବା ପାଇଁ ବନ୍ଧୁ ସଂଗ୍ରହ କରୁଥିଲେ । ତାଙ୍କର ଅତିଥିସତ୍କାର ଅବିସ୍ମରଣୀୟ । ନିଜ ଖାଦ୍ୟର ଆଡ଼ମ୍ବର କିଛି ନାହିଁ, ମାତ୍ର ବନ୍ଧୁମାନଙ୍କୁ ଷୋଡ଼ଶୋପଚାରରେ ପୂଜା କରନ୍ତି । ତାଙ୍କର ଆତିଥ୍ୟ ଗ୍ରହଣ କଲାବେଳେ କୌଣସି ରାଜା ମହାରାଜାଙ୍କ ଗୃହରେ ଅତିଥି ହେଲା ପରି ବୋଧହୁଏ । ବିପନ୍ନକୁ ସାହାଯ୍ୟ କରିବା ଏବଂ ଅକ୍ଷମ ଦରିଦ୍ରକୁ ଦାନ କରିବା ତାଙ୍କ ଜୀବନର ବ୍ରତ ଥିଲା । ବିପନ୍ନ ବା ଅଭାବଗ୍ରସ୍ତକୁ ସମାଦରପୂର୍ବକ ବସାରେ ରଖି ପାଥେୟ ଦେଇ ବିଦାୟ କରିବାର ଦେଖାହୋଇଅଛି ।

ସାହିତ୍ୟରେ ନୀଳମଣିଙ୍କର ସ୍ଥାନ ଖୁବ୍ ଉଚ୍ଚରେ ନିର୍ଦ୍ଦିଷ୍ଟ । ସାହିତ୍ୟରେ ସେ ଅନେକ କାର୍ଯ୍ୟ କରିଅଛନ୍ତି । ସେ ଯେତେ କରିଅଛନ୍ତି, ତାହାର

ବହୁଗୁଣ କରାଇଅଛନ୍ତି । ରାଜା ମହାରାଜାଙ୍କ ସାହାଯ୍ୟରେ ଅନେକ ଗରିବ ଗ୍ରନ୍ଥକାରଙ୍କର ପୁସ୍ତକ ଛପାଇଦେଇଅଛନ୍ତି । ନିଜେ ମଧ୍ୟ ଅନେକ କ୍ଷୁଦ୍ର କ୍ଷୁଦ୍ର ଉପାଦେୟ ପୁସ୍ତକ ଲେଖି ପ୍ରକାଶ କରିଯାଇଅଛନ୍ତି । ସେଥିମଧ୍ୟରୁ ଅଧିକାଂଶ ନୀତିଶିକ୍ଷା-ପୁସ୍ତକ । ସେ ଯେଉଁପରି ଗୁଣୀ, ସେହିପରି ଗୁଣଗ୍ରାହୀ ଏବଂ ସତ୍‌ସାହିତ୍ୟର ଉତ୍ସାହଦାତା । ସାହିତ୍ୟର ତଥା ଦେଶର ଉନ୍ନତି ସକାଶେ ସେ ଶତହସ୍ତ ହୋଇ କାର୍ଯ୍ୟ କରୁଥିଲେ । ସେ ହିତୈଷିଣୀରେ ସାହିତ୍ୟସନ୍ଦର୍ଭ ବିଷୟରେ ଦୀର୍ଘ ଦୀର୍ଘ ସୁଚିନ୍ତିତ ପ୍ରବନ୍ଧ ଲେଖି ସାହିତ୍ୟର ପନ୍ଥା ପରିବର୍ତ୍ତନ କରିଦେଇଥିଲେ । ତାଙ୍କର ପ୍ରବର୍ତ୍ତନାରେ ଅନେକ କୃତବିଦ୍ୟ ବ୍ୟକ୍ତି ସାହିତ୍ୟ ସଂସ୍କାରରେ ମନୋନିବେଶ କରିଥିଲେ । ଫଳତଃ ବିଜୁଳି ଓ ଇନ୍ଦ୍ରଧନୁ ଆବିର୍ଭୂତ ହୋଇ ସାହିତ୍ୟର ଅନେକ ଜଟିଳ ସମସ୍ୟାର ସମାଧାନ କରିଥିଲେ । ସମ୍ବାଦପତ୍ରର ସମ୍ପାଦକରୂପରେ ସେ ଦେଶର ମହୋପକାର ସାଧନ କରିଯାଇଅଛନ୍ତି । ତାଙ୍କର ବିଷୟ-ନିର୍ବାଚନ ଯେପରି ଉତ୍କୃଷ୍ଟ, ଭାଷା ସେହିପରି ଭାବପ୍ରାଣ, ଉତ୍ତେଜକ ଏବଂ ବିଷୟର ଉପଯୋଗୀ । ତାଙ୍କର ଲେଖା ସହଜରେ ହୃଦୟ ସ୍ପର୍ଶ କରିପାରୁଥିଲା । ସମାଜର କୁରୀତି, କୁନୀତି ଓ ଅନ୍ଧସଂସ୍କାରର ନିରାକରଣ ସକାଶେ ସେ ସମାଜ-ସଂସ୍କାରରେ ବିଶେଷ ମନୋଯୋଗୀ ହୋଇଥିଲେ । ସେଥିପାଇଁ ତାଙ୍କୁ ଅନେକ ଅଠା, ବିଦ୍ରୂପ, ଲାଞ୍ଛନା ସହିବାକୁ ହୋଇଥିଲା । ମାତ୍ର ସେ ସେଥିପ୍ରତି ଥରେମାତ୍ର ଭ୍ରୂକ୍ଷେପ କରିନାହାନ୍ତି । ତାଙ୍କୁ ମୂର୍ତ୍ତିମାନ୍ ଉଦାରତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

କଟକ ଜିଲ୍ଲାନ୍ତର୍ଗତ ବାଙ୍କି ତହସିଲର ବୈଦେଶ୍ୱର ଗ୍ରାମସଂଲଗ୍ନ ବ୍ରଜବିହାରୀପୁର ଶାସନରେ ନୀଳମଣି ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଗୌରଚରଣ ମିଶ୍ର ଜଣେ ନିଷ୍ଠାପର ବ୍ରାହ୍ମଣ । ଶାସନ ମଧ୍ୟରେ ତାଙ୍କର ବଂଶ ଜାତୀୟ ମର୍ଯ୍ୟାଦାରେ ଉତ୍କୃଷ୍ଟ । ତାଙ୍କ ପୂର୍ବପୁରୁଷ ରାଜସମ୍ମାନିତ ଥିଲେ । ଗ୍ରାମ୍ୟପାଠଶାଳାରେ ନୀଳମଣିଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ ହୋଇଥିଲା । ବାଲ୍ୟକାଳରୁ ନୀଳମଣିଙ୍କ ଶିକ୍ଷାର ଅନୁରାଗ ପ୍ରବଳ ହୋଇ ଫୁଟିଉଠିଲା । ବାଙ୍କିର ତାତ୍କାଳିକ ତହସିଲଦାର ଶ୍ରୀନାଥ ବୋଷ ନୀଳମଣିଙ୍କ ଶିକ୍ଷାନୁରାଗିତା ବିଷୟରେ ବହୁବାର ସ୍କୁଲ ଦର୍ଶକାଭିପ୍ରାୟ ପୁସ୍ତକରେ ଅନେକ ପ୍ରଶଂସା ଲେଖିଯାଇଅଛନ୍ତି ।

× × × ×

ବିଦ୍ୟାରତ୍ନ 'ସମ୍ବଲପୁର ହିତୈଷିଣୀ'ର ସମ୍ପାଦକ ନିଯୁକ୍ତ ହୋଇ ତେରବର୍ଷକାଳ ଦକ୍ଷତା ସହିତ ଉନ୍ନତ ଧରଣରେ ପତ୍ରିକା ସଞ୍ଚାଳନା କରି ବିଶେଷ ପ୍ରଶଂସା ଲାଭ କରିଥିଲେ ।

ବିଦ୍ୟାରତ୍ନ ବାମଣ୍ଡାରୁ ଆସି ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ସାହାଯ୍ୟରେ ରମ୍ଭାରୁ 'ପ୍ରଜାବନ୍ଧୁ' ପତ୍ର ପ୍ରକାଶ କଲେ । ସେ 'ଉତ୍କଳ-ମଧୁପ'ର ଜନ୍ମଦାତା । ତାଙ୍କରି ପ୍ରରୋଚନାରେ ରମ୍ଭାରୁ 'ସଂସ୍କାରକ' ନାମକ ମାସିକ-ପତ୍ରିକା ପଣ୍ଡିତ ଗଦାଧର ବିଦ୍ୟାଭୂଷଣଙ୍କ ସମ୍ପାଦକତ୍ୱରେ ପ୍ରକାଶିତ ହୋଇଥିଲା । ଖଲ୍ଲିକୋଟ ରାଜାଙ୍କ ମୃତ୍ୟୁ ପରେ 'ପ୍ରଜାବନ୍ଧୁ' ବନ୍ଦ ହୋଇଗଲା । ତହୁଁ ନୀଳମଣି ବଡ଼ଖେମୁଣ୍ଡି ଯାଇ ସେଠାରେ 'ଗୁଣଦର୍ପଣ' ପତ୍ରର ସମ୍ପାଦକ ହେଲେ । ତତ୍ପରେ 'ଉତ୍କଳଦୀପିକା'ର ସମ୍ପାଦକ ହୋଇ କଟକ ଆସିଲେ; ମାତ୍ର ଉତ୍କଳଦୀପିକାର ସମ୍ପାଦନ ଭାର ତାଙ୍କୁ ଅଧିକ ଦିନ ବହନ କରିବାକୁ ହେଲା ନାହିଁ । ସମ୍ପାଦକୀୟ ସ୍ୱାଧୀନତା ଅଭାବରୁ ସେ ଦୀପିକାର ସମ୍ପର୍କ ଛାଡ଼ି କଟକରେ ରହି 'ଉତ୍କଳମଧୁପ' ପ୍ରକାଶ କରୁଥିଲେ । ଦୁର୍ଦ୍ଦୈବ ସେଥିରୁ ସୁଦ୍ଧା ତାଙ୍କୁ ବଞ୍ଚିତ କଲା । କଟକରେ ସେ ପୀଡ଼ିତ ହୋଇ ଜୁଲାଇ ୨୬ ତାରିଖ ରାତି ୧୨ ଘଣ୍ଟା ସମୟରେ ଦେହତ୍ୟାଗ କଲେ । ମୃତ୍ୟୁ ସମୟରେ ତାଙ୍କର ବୟସ ପ୍ରାୟ ୬୦ ବର୍ଷ ହୋଇଥିଲା ।

ନୀଳମଣିଙ୍କର ପୌତ୍ତଳିକତା ପ୍ରତି ପ୍ରଥମତଃ ଘୋର ଆସ୍ଥା ଥିଲା । ତାହା କ୍ରମେ ଅନ୍ତରିତ ହେବାକୁ ଲାଗିଲା । ପ୍ରଧାନଘାଟ ପ୍ରପାତ ନିକଟରେ ଭକ୍ତକବି ମଧୁସୂଦନ ରାଓଙ୍କ ପ୍ରାର୍ଥନା ଶ୍ରବଣ କରି ବ୍ରାହ୍ମଧର୍ମ ପ୍ରତି ସେ ଆକୃଷ୍ଟ ହେଲେ । ତହିଁପରେ ନଗେନ୍ଦ୍ରନାଥ ବନ୍ଦୋପାଧ୍ୟାୟଙ୍କ 'ଧର୍ମଜିଜ୍ଞାସା', ଅଶ୍ୱିନୀକୁମାରଙ୍କ 'ଭକ୍ତିଯୋଗ' ଓ ଶିବନାଥ ଶାସ୍ତ୍ରୀଙ୍କ ପୁସ୍ତକମାନ ପାଠକରି ସେ ବ୍ରାହ୍ମଧର୍ମ ପ୍ରତି ଅତ୍ୟନ୍ତ ଅନୁରକ୍ତ ହେଲେ ।

ପ୍ରଚଳିତ ଜାତିଭେଦ ପ୍ରଥାକୁ ସେ ଭାରି ଘୃଣା କରୁଥିଲେ ଏବଂ ଅନେକ ସମୟରେ ବିଭିନ୍ନ ଜାତିସ୍ଥ ବନ୍ଧୁବାନ୍ଧବଙ୍କ ସହିତ ଏକତ୍ର ଭୋଜନ କରୁଥିଲେ । ତାଙ୍କ ଚେଷ୍ଟାରେ ଓ ତାଙ୍କ ଅନ୍ନରେ କେତେଜଣ ଛାତ୍ର ଶିକ୍ଷାଲାଭ କରି ସ୍ୱୀୟ ଜୀବିକା ନିର୍ବାହରେ ସମର୍ଥ ହୋଇଅଛନ୍ତି । ଶିକ୍ଷା ନିମନ୍ତେ ସେ ଛାତ୍ରମାନଙ୍କୁ ସର୍ବଦା ଉତ୍ସାହିତ ଏବଂ ପୁରସ୍କୃତ କରୁଥିଲେ ।

ନୀଳମଣି ଚାଲିଗଲେ, ତାଙ୍କ ସୌମ୍ୟ ସୁନ୍ଦର ମୂର୍ତ୍ତି କାଳତରଙ୍ଗରେ ମିଶିଗଲା, ରହିଲା କେବଳ ସ୍ମୃତି । ଏଣିକି ତାଙ୍କ କର୍ମ ମଧ୍ୟରେ ତାଙ୍କର ଉଜ୍ଜ୍ୱଳ ମୂର୍ତ୍ତି ପ୍ରତିଭାତ ହେବ । ତାଙ୍କ ସ୍ମୃତି ମଧ୍ୟ ତାଙ୍କୁ ସହସ୍ର ମୂର୍ତ୍ତିରେ ପ୍ରକାଶ କରିବ । ସେ ଅନନ୍ତଯୋଜନ ବ୍ୟବଧାନରେ ଦେବମେଳରେ ଅଛନ୍ତି । ପୃଥିବୀର ଶବ୍ଦ ସେ ଦିବ୍ୟଧାମ ପର୍ଯ୍ୟନ୍ତ ଯାଏ କି ନାହିଁ କିଏ କହିବ । ନୀଳମଣି ମୁକ୍ତିକାମୀ ନୁହନ୍ତି, ସେ କର୍ମଯୋଗୀ । କର୍ମଯୋଗୀଙ୍କର ମୁକ୍ତି ନାହିଁ । ବାରମ୍ବାର ଜନ୍ମ ବାରମ୍ବାର ଦେଶ-ସେବାରୂପ କର୍ମସାଧନରେ ଯେ ସୁଖ, ଯେ ଆନନ୍ଦ, ଯେ ତୃପ୍ତି, ମୁକ୍ତିରେ ସେ ସୁଖ,

ସେ ଆନନ୍ଦ ବା ତୃପ୍ତି ନାହିଁ । କର୍ମଯୋଗୀମାନେ ମୁକ୍ତି ଅପେକ୍ଷା କର୍ମକୁ ଉଚ୍ଚାସନ ପ୍ରଦାନ କରିଥାଆନ୍ତି । ନୀଳମଣି ଯାଇଅଛନ୍ତି ସତ୍ୟ; କିନ୍ତୁ ଆସିବା ପାଇଁ ଯାଇଅଛନ୍ତି । ଜୀର୍ଣ୍ଣଦେହ କର୍ମସାଧନରେ ଅକ୍ଷମ ହେବାରୁ ସେ ତାହା ପରିବର୍ତ୍ତନ କରିବା ପାଇଁ ଯାଇଅଛନ୍ତି । ଯଥାସମୟରେ ନବକଳେବର, ନବଶକ୍ତି, ନବଉତ୍ତେଜନା ଘେନି ପୁଣି କର୍ମଭୂମିରେ ଅବତୀର୍ଣ୍ଣ ହୋଇ ସେ ସ୍ୱୀୟ ଅପୂର୍ଣ୍ଣ କର୍ମର ପୂର୍ଣ୍ଣତାରେ ମନୋନିବେଶ କରିବେ । ଜନ୍ମାନ୍ତର ଯଦି ସତ୍ୟ ହୁଏ, ପୂର୍ବଜନ୍ମର ସଂସ୍କାର ଯଦି ସତ୍ୟ ହୁଏ, ତେବେ ନୀଳମଣି ନିଶ୍ଚୟ ଆସିବେ ।

ନୀଳମଣି ଧନୀ ନ ଥିଲେ; କିନ୍ତୁ ବିଭବଶାଳୀ ରାଜା ମହାରାଜାଙ୍କଠାରୁ ସାଧାରଣ ଲୋକ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଆଦର ସମ୍ମାନ କରୁଥିଲେ । ତାଙ୍କ ପରି ସାମୟିକ ଅବସ୍ଥାବିଶେଷରେ ସଦାପ୍ରଫୁଲ୍ଲଚିତ୍ତ ବ୍ୟକ୍ତି ବିରଳ ପରିଲକ୍ଷିତ ହୁଅନ୍ତି । ସେ ପ୍ରତିଷ୍ଠାର ପ୍ରୟାସୀ ନ ଥିଲେ, କର୍ମରେହିଁ ତାଙ୍କର ଆନନ୍ଦ । କର୍ମ-ଦେବତାର ଉପଯୁକ୍ତ ପୂଜାରୀ ତାଙ୍କ ପରି କିଏ ? ଦୀନଦରିଦ୍ର ଓ ବିପନ୍ନଙ୍କୁ ଯଥାଶକ୍ତି ସାହାଯ୍ୟ କରିପାରିଲେ ସେ ନିଜକୁ କୃତାର୍ଥ ମଣୁଥିଲେ । ଅଭାବ ତାଙ୍କର ମନର ଶାନ୍ତି ହରଣ କରିବାକୁ କେବେହେଲେ କ୍ଷମ ହୋଇ ନାହିଁ ।

ଉପଦ୍ରବ, ଅତ୍ୟାଚାର, ଅବିଚାର, ମିଥ୍ୟା, ପ୍ରବଞ୍ଚନା ପ୍ରଭୃତି ପାପ ଦେଖିଲେ ବିଦ୍ୟାରତ୍ନଙ୍କର ଲେଖନୀ ଅନଳ ଉଦ୍‌ଗାର କରେ । ତାଙ୍କର ଲେଖନୀ ବିପନ୍ନର ନିତ୍ୟ ସହାୟ ଏବଂ ଦରିଦ୍ରର ଏକାନ୍ତ ଅନୁକୂଳ । ମହତ୍ତ୍ୱ ଦେଖିଲେ ଲୋକେ ଯେପରି ମୁଗ୍‌ଧ ହୁଅନ୍ତି, ସେହିପରି ଅନେକେ କ୍ଷୁବ୍‌ଧ ମଧ୍ୟ ହୁଅନ୍ତି, ଏହା ସଂସାରର ନିତ୍ୟ ପରିଦୃଶ୍ୟମାନ ଘଟଣା । ଗୁଣୀକୁ ଲୋକେ ଈର୍ଷା କରନ୍ତି । ମାତ୍ର ନିର୍ଗୁଣକୁ କିଏ କାହିଁକି ଈର୍ଷା କରିବ ? ଯେଉଁମାନେ ବିଦ୍ୟାରତ୍ନଙ୍କ ପ୍ରତିଷ୍ଠାରେ ଈର୍ଷା କରୁଥିଲେ, ସେମାନେ ବଡ଼ ଭୁଲ କରୁଥିଲେ । ଗୁଣକୁ ଈର୍ଷା ନ କରି ବ୍ୟକ୍ତିକୁ ଈର୍ଷା କଲେ କିଛି ଫଳ ମିଳେ ନାହିଁ । ସେମାନେ ବିଦ୍ୟାରତ୍ନଙ୍କୁ ଈର୍ଷା ନ କରି ତାଙ୍କ ଗୁଣକୁ ଈର୍ଷା କରିଥିଲେ, ତଦ୍ଦ୍ୱାରା ସେମାନଙ୍କର ଅଶେଷ ଉପକାର ହୋଇଥାଆନ୍ତା ।

ବିଦ୍ୟାରତ୍ନ ଅନେକ ସମୟରେ ଅନେକ ପ୍ରକାର ଦୁଃଖକଷ୍ଟର ଚରମ ସୀମାରେ ଉପସ୍ଥିତ ହୋଇ ସୁଦ୍ଧା କ୍ଷଣକ ସକାଶେ ତାଙ୍କ ପ୍ରିୟ ପୂଜନୀୟ ମାତୃଭୂମି ସେବାରୁ ବିରତ ହୋଇ ନାହାନ୍ତି । ବିପଦ ଯେତେ ବଡ଼ ହୁଏ, ତାଙ୍କର ପ୍ରତିଜ୍ଞା ତେତେ ଦୃଢ଼ ହୁଏ । ସେ ବିପଦ ସଙ୍ଗରେ ମହାବୀର ପରି ଯୁଦ୍ଧ କରନ୍ତି, ମାତ୍ର ପୃଷ୍ଠଭଙ୍ଗ ଦିଅନ୍ତି ନାହିଁ । ତାଙ୍କର ଏହି ନିଷ୍ଠା, ଏହି ନୈତିକ ସାହସ ପରିଶେଷରେ ତାଙ୍କୁ ଜୟଶ୍ରୀରେ ମଣ୍ଡିତ କରେ । ତାଙ୍କର ଜୀବନଚରିତ ଆଲୋଚନା କଲେ ଏହି ମହତ୍ ଶିକ୍ଷା ମିଳେ ଯେ, ନିଷ୍ଠା, ଅଧ୍ୟବସାୟ ଅକ୍ଷତ ଥିଲେ ସାଧନାର ସିଦ୍ଧି ଅବଶ୍ୟ

ହୁଏ । ଲକ୍ଷ୍ୟପଥର ବାଧାବିପତ୍ତି ଯେତେ ଦୁର୍ଲଙ୍ଘନୀୟ ହେଉପଛେ, ପ୍ରାଣପଣେ ଯତ୍ନ ଏବଂ ଚେଷ୍ଟାରେ ତାହା ନିଶ୍ଚୟ ଅତିକ୍ରମ କରିହୁଏ ।

ଉତ୍କଳର ମହାମଣି ହେ ନୀଳମଣି, ତୁମ୍ଭେ ଉତ୍କଳକୁ ଯାହା ଦେଇଅଛ, ଉତ୍କଳ ତାହାର ପ୍ରତିଦାନ କରିପାରି ନାହିଁ । ମୁମୂର୍ଷୁ ଅବସ୍ଥାରେ ତୁମ୍ଭ ତୁଣ୍ଡରେ ଟୋପାଏ ଔଷଧ ଦେବାକୁ କାହାର ସାଧ ହେଲା ନାହିଁ । ତୁମ୍ଭେ ହତାଶ ହୋଇ ଆତ୍ମୀୟ-ପରିବାରଶୂନ୍ୟ କଟକରେ ଦେହ ତ୍ୟାଗକଲ, ଏ ଦୁଃଖ, ଏ ଲଜ୍ଜା ରଖିବାକୁ ସ୍ଥାନ ନାହିଁ, କିନ୍ତୁ ତୁମ୍ଭ ବର୍ତ୍ତମାନ ପ୍ରତିଦାନର ଅତୀତ ଅନାମୟ ଅମୃତଧାମରେ ଅବସ୍ଥାନ କରୁଅଛ, ସ୍ଥାନ ପ୍ରଭାବରେ ତୁମ୍ଭର କ୍ଷମାହିଁ ଧର୍ମ ହୋଇଥିବ । ତେଣୁ ଆଶାହୁଏ, ତୁମ୍ଭେ ନିଜ ଗୁଣରେ କାହାର ଅପରାଧ କ୍ଷମା କରିବ । ତୁମ୍ଭେ ଦେଶ-ସେବାରେ ଯେଉଁ ପୁଣ୍ୟାର୍ଜ୍ଜନ କରିଅଛ, ତାହାର ଫଳରେ ସ୍ୱର୍ଗରେ ଅମୃତ ସୁଖଶାନ୍ତି ଉପଭୋଗ କରୁଥିବ । ଉତ୍କଳରେ ତୁମ୍ଭର ଗତ ଜୀବନ ସୁଖମୟ ହୋଇ ନାହିଁ, ତଥାପି ଆମ୍ଭମାନଙ୍କର ବିଶ୍ୱାସ, ତୁମ୍ଭେ ପୁଣି ଏହି ଦେବଧାମ ଉତ୍କଳରେ ଜନ୍ମଗ୍ରହଣ କରିବ । ତୁମ୍ଭର ମାତୃସେବା ତପସ୍ୟାର ଫଳ ତୁମ୍ଭକୁ ନିଶ୍ଚୟ ଉତ୍କଳବକ୍ଷକୁ ଟାଣି-ଆଣିବ । ତୁମ୍ଭେ ଆସ, ନାନାଶାସ୍ତ୍ରରୁ ନାନାରତ୍ନ ସଂଗ୍ରହ କରି ମାତୃସାହିତ୍ୟଭଣ୍ଡାର ପୂର୍ତ୍ତିକର । ତୁମ୍ଭର ଗତଜନ୍ମ ଅପୂର୍ଣ୍ଣ କାର୍ଯ୍ୟର ପୂର୍ତ୍ତିତା ସାଧନ କର । ବନାଥ ନୀଳମଣି, ତୁମ୍ଭର ସ୍ୱାଭାବିକ ଉତ୍ତେଜନା ଶଙ୍ଖ । ସେ ପବିତ୍ରଧ୍ୱନି ସ୍ୱଦେଶର ପ୍ରାଣ ଓ ଆତ୍ମାକୁ ସ୍ପର୍ଶକରୁ, ଅର୍ଦ୍ଧସୁପ୍ତ ଉତ୍କଳ ପୂର୍ତ୍ତିଭାବରେ ଜାଗ୍ରତ ହୋଇଉଠୁ ।

ଗ୍ରନ୍ଥାବଳୀର କଳେବର ଦୃଷ୍ଟିରେ ବିଦ୍ୟାରତ୍ନଙ୍କ ଜୀବନଚରିତ ସଂକ୍ଷେପରେ ପ୍ରଦତ୍ତ ହେଲା । ଯୋଗଜନ୍ମା ନୀଳମଣିଙ୍କ ନିକଟରେ ମୁଁ ନାନା ଭାବରେ କୃତଜ୍ଞ । ତାଙ୍କର ପ୍ରବର୍ତ୍ତନାରେ ମୁଁ ଗଞ୍ଜାମ ଯାଇ ବ୍ରହ୍ମପୁରରୁ ପ୍ରକାଶିତ 'ହିତବାଦିନୀ' ପତ୍ରିକାର ସମ୍ପାଦକ ହୋଇଥିଲି । ସେ ବରାବର ମୋ ଦ୍ୱାରା ପୁସ୍ତକ ଲେଖାଉ-ଥିଲେ । ମୋର କେତେଖଣ୍ଡ ପୁସ୍ତକ ତାଙ୍କରି ଯତ୍ନରେ ମୁଦ୍ରିତ ହୋଇଥିଲା । ସେ ମୋତେ ସାନ ଭାଇ ପରି ସ୍ନେହ କରୁଥିଲେ । ତାଙ୍କର ଉତ୍ସାହ ମୋ ହୃଦୟରେ ଅଦ୍ୟାପି ମୁଦ୍ରିତ ରହିଅଛି । ସେ କାଳର ବନ୍ଧୁତା, ଉତ୍ସାହ, ସହାନୁଭୂତି ଏବେ ଦୁର୍ଲଭ ହୋଇଅଛି । ନୀଳମଣିଙ୍କ ବିସ୍ତୃତ ଜୀବନଚରିତ ପୁସ୍ତକ ଲିଖିତ ହେବା ଆବଶ୍ୟକ । କେହି ବିସ୍ତୃତ ଭାବରେ ତାଙ୍କର ଜୀବନଚରିତ ଲେଖିଲେ ମୁଁ ବିଶେଷ ସୁଖୀ ହେବି; କିନ୍ତୁ ସେ ସୁଖାନୁଭୂତି ମୋ ଜୀବଦ୍ଦଶାରେ ଘଟିବ ପରି ଜଣାହେଉ ନାହିଁ । ତାହା ଶୀଘ୍ର ନ ହେଉ ପଛକେ, ମାତ୍ର ଦିନେ ଯେ ନିଶ୍ଚୟ ହେବ, ଏ ଭରସା ମୁଁ ରଖିଅଛି । ଉପସଂହାରରେ ମୁଁ ଏତିକି କହି କ୍ଷାନ୍ତ ହେଲି ।

( 'ଚନ୍ଦ୍ରାମଣି ଗ୍ରନ୍ଥାବଳୀ' ୪ର୍ଥ ଖଣ୍ଡ )

---

# ନୀଳମଣି ବିଦ୍ୟାରତ୍ନ

—ମାୟାଧର ମାନସିଂହ, ସଂପାଦକ, 'ଜ୍ଞାନକୋଷ'

ଉତ୍କଳସମ୍ମିଳନୀର ସ୍ରଷ୍ଟା ଓ ଉତ୍କଳର ବିଖ୍ୟାତ ଦେଶଭକ୍ତ ଓ ସାମ୍ବାଦିକ । କଟକ ଜିଲ୍ଲାର ବାଙ୍କି ନିକଟବର୍ତ୍ତୀ ବୈଦ୍ୟେଶ୍ୱର ଅନ୍ତର୍ଗତ ବ୍ରଜବିହାରୀପୁର ଶାସନରେ ଖ୍ରୀ. ୧୮୬୭ ଡିସେମ୍ବର ୧୪ ତାରିଖରେ ନୀଳମଣି ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଗୌରି-ଚରଣ ମିଶ୍ର । ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ନୀଳମଣି ବିଦ୍ୱାନ୍ ଥିଲେ ଓ ଖ୍ରୀ. ୧୮୮୭ ରେ ବାମଣ୍ଡାର ମହାରାଜା ସାର୍ ବାସୁଦେବ ସୁଢ଼ଳଦେବ 'ସମ୍ବଲପୁର ହିତୈଷିଣୀ' ପତ୍ରିକା ଆରମ୍ଭ କରିବା ପରେ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦକତ୍ୱରେ ତାହା ୧୬ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା ।

ସେହି ସମୟ ମଧ୍ୟରେ କଟକ ପ୍ରିଣ୍ଟିଂ କୋମ୍ପାନୀରୁ 'ବିଜୁଳି' ନାମକ ମାସିକ ପତ୍ରିକା ପ୍ରକାଶ ପାଇଲା । ଏହାର ବିରୋଧୀ ଭାବରେ ନୀଳମଣିଙ୍କଦ୍ୱାରା ବାମଣ୍ଡାରୁ 'ହିତୈଷିଣୀ' ସାଙ୍ଗକୁ 'ଇନ୍ଦ୍ରଧନୁ' ନାମକ ଆଉ ଗୋଟିଏ ମାସିକ ପତ୍ରିକା ପ୍ରକାଶ ପାଇଲା । 'ବିଜୁଳି' ଓ 'ଇନ୍ଦ୍ରଧନୁ'ରେ କ୍ରମଶଃ ଭଞ୍ଜସାହିତ୍ୟ ଓ ରାଧାନାଥଙ୍କ ସାହିତ୍ୟର ସମାଲୋଚନା-ବାଦୀ-ପାଲା ଖୁବ୍ ଜୋରସୋରରେ ଚାଲିଲା । ଖ୍ରୀଷ୍ଟାବ୍ଦ ୧୮୯୫ରେ ନୀଳମଣି ବାମଣ୍ଡାର ଷ୍ଟେଟ୍ କାଉନ୍‌ସିଲ୍‌ର ଅବୈ-ତନିକ ସଭ୍ୟ ହୋଇଥିଲେ ଓ ତାଙ୍କୁ ରାଜଦରବାରରୁ 'ବିଦ୍ୟାରତ୍ନ' ଉପାଧି ଦିଆ-ଯାଇଥିଲା । ସମ୍ବଲପୁର ସେତେବେଳେ ମଧ୍ୟପ୍ରଦେଶ ଅଧୀନରେ ଥିଲା ଓ ସେଠାରେ ହିନ୍ଦୀ କଚେରୀ-ଭାଷା ଥିଲା; କିନ୍ତୁ ବିଦ୍ୟାରତ୍ନେ 'ହିତୈଷିଣୀରେ' ଏ ବିଷୟରେ ତୁମୁଳ ଆନ୍ଦୋଳନ ଚଳାଇବାରୁ ସମ୍ବଲପୁରରେ ଓଡ଼ିଆ କଚେରୀ ଭାଷାରୂପେ ଖ୍ରୀ. ୧୯୦୩, ଜାନୁଆରୀ ୧ ତାରିଖରୁ ଚଳିଲା ଓ ୧୯୦୫ରୁ ସମ୍ବଲପୁର ଓଡ଼ିଶାରେ ମିଶିଗଲା । ବାମଣ୍ଡାରେ ୧୬ ବର୍ଷ ରହିବା ପରେ ବାମଣ୍ଡାର ରାଜା ସୁଢ଼ଳଦେବଙ୍କ ସହିତ ପୁରୀରାଜାଙ୍କ ପୋଷ୍ୟପୁତ୍ର ଗ୍ରହଣ କରିବା ବିଷୟରେ ମତାନ୍ତର ହେବାରୁ ନୀଳମଣି ବାମଣ୍ଡା ତ୍ୟାଗ କରି ଗଞ୍ଜାମ ଆସିଗଲେ ଓ ଖ୍ରୀଷ୍ଟାବ୍ଦ ୧୯୦୬ରେ ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜଙ୍କ ନିକଟରେ ରହି 'ପ୍ରଜାବନ୍ଧୁ' ନାମକ ମାସିକ ପତ୍ରିକା ସମ୍ପାଦନ କଲେ । ସେହି ବର୍ଷ ନୀଳମଣି ବିଦ୍ୟାରତ୍ନ ହରିହର

ମହାରାଜଙ୍କ ସାହାଯ୍ୟରେ ଗଞ୍ଜାମର 'ଓଡ଼ିଆ ସଭା' (ପରେ ମାଡ୍ରାସ୍ ଓଡ଼ିଆ ଏସୋସିଏସନ୍)ର ଗୋଟିଏ ଅଧିବେଶନ ବ୍ରହ୍ମପୁରରେ ଡାକିଥିଲେ ଓ ସେଠାକୁ ମଧୁସୂଦନ ଦାସ ଓ ବିଶ୍ୱନାଥ କର ନିମନ୍ତ୍ରିତ ହୋଇଥିଲେ । ଏହାର ଆଦର୍ଶରେ ପରବର୍ଷ, ଅର୍ଥାତ୍ ୧୯୦୩ରେ କଟକରେ ମଧୁବାବୁଙ୍କ ଆହ୍ୱାନରେ ଉତ୍କଳ ସମ୍ମିଳନୀ ଆରମ୍ଭ ହୋଇଥିଲା । ଏହିଭାବରେ ନୀଳମଣି ବିଦ୍ୟାରତ୍ନ ହିଁ ଉତ୍କଳ ସମ୍ମିଳନୀ ଓ ଓଡ଼ିଶା ପ୍ରଦେଶର ବୀଜ କହିଲେ ଅତ୍ୟୁକ୍ତି ହେବ ନାହିଁ । ବଡ଼-ଖେମଣ୍ଡିର ରାଜା କୃପାମୟ ଅନଙ୍ଗଭୀମଦେବଙ୍କ ନିକଟରେ ନୀଳମଣି କିଛିକାଳ ରହି 'ଗୁଣଦର୍ପଣ' ନାମକ ମାସିକ ପତ୍ର ବାହାର କରିଥିଲେ । ଏହିଠାରେ ନୀଳମଣି ଯେଉଁ 'ଉତ୍କଳମଧୁପ' ନାମକ ମାସିକ ପତ୍ରର ପ୍ରକାଶ ଆରମ୍ଭ କରିଥିଲେ ତାହାକୁ ଓଡ଼ିଆରେ ସର୍ବଜ୍ଞାନ ସଂଗ୍ରହର ପ୍ରଥମ ଚେଷ୍ଟା କୁହାଯାଇପାରେ । ଶେଷ ବୟସରେ କଟକରେ ନୀଳମଣି 'ଉତ୍କଳଦୀପିକା'ର ସମ୍ପାଦକ ହୋଇଥିଲେ । ନୀଳମଣି ନିଜେ ଅନେକ ଗଦ୍ୟ ଓ ପଦ୍ୟାତ୍ମକ ପୁସ୍ତକ ରଚନା କରିଅଛନ୍ତି ଓ ନିଜ ଜୀବନକାଳରେ ଅନେକ ସମସାମୟିକ କବି ଓ ଲେଖକଙ୍କୁ ବହୁ ସାହାଯ୍ୟ କରିଦେଇଛନ୍ତି । ସେ ନିଜେ ଦରିଦ୍ର ଥିଲେହେଁ, ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ, ଗଙ୍ଗାଧର ମେହେର ଓ ଚିନ୍ତାମଣି ମହାନ୍ତି ପ୍ରଭୃତି ଉତ୍କଳର ଯୋଗ୍ୟ ପୁତ୍ରମାନଙ୍କୁ ସେ ଯଥୋଚିତ ଆର୍ଥିକ ସାହାଯ୍ୟ ଓ ସୁବିଧା କରାଇଦେଇ ପାରିଥିଲେ । କବିବର ଗଙ୍ଗାଧର, ନୀଳମଣି ବିଦ୍ୟାରତ୍ନଙ୍କ ମାନବିକ ମହିମା ବର୍ଣ୍ଣନା କରି ଏକ ମନୋଜ୍ଞ କବିତା ଛାଡ଼ି ଯାଇଅଛନ୍ତି । ନୀଳମଣି ଯୁଗସ୍ରଷ୍ଟା ରାଧାନାଥଙ୍କର ସମ୍ମାନିତ ବ୍ୟକ୍ତିଗତ ବନ୍ଧୁ ଥିଲେ । ଖ୍ରୀ. ୧୯୨୪ ଜୁଲାଇ ତା ୨୬ ରିଖରେ କଟକ ସହରରେ ସ୍ୱନାମଧନ୍ୟ ନୀଳମଣି ବିଦ୍ୟାରତ୍ନ ଇହଲୀଳା ସାଙ୍ଗ କରିଥିଲେ । ମୃତ୍ୟୁର ୩ ମାସ ପୂର୍ବରୁ ନୀଳମଣି 'ଉତ୍କଳଦୀପିକା' ସମ୍ପାଦକତ୍ୱ ଛାଡ଼ି ଦେଇଥିଲେ, କାରଣ ଉତ୍କଳ ଦୀପିକାର ଡିରେକ୍ଟରମାନଙ୍କ ସହ ତାଙ୍କ ଲେଖାରେ ମତଭେଦ ଘଟିଥିଲା । ଏହି ଅବସରରେ କଟକରେ ଗୋଟିଏ ପ୍ରେସ କରି ଗୋଟିଏ ସ୍ୱାଧୀନ ପତ୍ରିକା ପ୍ରକାଶ କରିବା ଚେଷ୍ଟାରେ ଥିବା ସମୟରେ ତାଙ୍କର ଅକାଳ ବିୟୋଗ ଘଟିଥିଲା । ଦୁଃଖର ବିଷୟ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଜାତୀୟ ଋଣ ବିଷୟରେ ଉତ୍କଳବାସୀ ଏପର୍ଯ୍ୟନ୍ତ ସଚେତନ ହୋଇ ନାହାନ୍ତି ।

---

## ନବ ଉତ୍କଳ - ଦ୍ରଷ୍ଟା

# ପଣ୍ଡିତ ନୀଳମଣି ବିଦ୍ୟାରତ୍ନ

## ( ୧୮୭୭-୧୯୨୩ )

ଓଡ଼ିଶାରେ ୧୮୬୬ ମସିହାରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା । ପୁରୀ-ଗଜପତି ମହାରାଜଙ୍କ "ନଅ ଅଙ୍କ"ରେ ଏହା ପଡ଼ିଥିଲା ବୋଲି ଏହାକୁ "ନଅଙ୍କ ଦୁର୍ଭିକ୍ଷ" କୁହାଯାଏ । ଏହି ଦୁର୍ଭିକ୍ଷ ଓଡ଼ିଆଜାତିକୁ ଧୂଳିସାତ୍ କରି ଦେଲା, ଉତ୍କଳ-ଜନନୀ ଖଣ୍ଡବିଖଣ୍ଡିତ ହୋଇ ନିଜର ସତ୍ତା ସଂରକ୍ଷଣ ପାଇଁ ହରାଇ ବସିଲା, ଓଡ଼ିଆଜାତିର ମେରୁଦଣ୍ଡକୁ ଭାଙ୍ଗି ଚୂରମାର କରିଦେଲା । ଓଡ଼ିଆ ଭାଷା ଯୁଗ ଯୁଗକୁ ଲୋପ ପାଇଯିବ ······ ଏହିପରି ଏକ ଘୋର ଅମା ଅନ୍ଧକାରମୟ ଜାତିର ଦାରୁଣ ଦୁର୍ଗତିମୟ ସମୟରେ ନୀଳମଣି ବିଦ୍ୟାରତ୍ନ ଭୂମିଷ୍ଠ ହୁଅନ୍ତି କଟକ ଜିଲ୍ଲାର ଐତିହାସିକ ପୀଠ ବାଙ୍କୀ ଉପଖଣ୍ଡ ଅନ୍ତର୍ଗତ ପୁରାଣ ପ୍ରସିଦ୍ଧ ନଗରଗ୍ରାମ ବୈଦ୍ୟେଶ୍ୱରସ୍ଥ ବ୍ରଜବିହାରୀପୁର ଶାସନ ଗ୍ରାମରେ ୧୮୬୭ ମସିହା ଡିସେମ୍ବର ୧୪ ତାରିଖରେ ।

ଜଗନ୍ନାଥ ମିଶ୍ର ନାମକ କୁଳୀନ ବ୍ରାହ୍ମଣ ପରିବାର ବଂଶାନୁକ୍ରମେ ବ୍ରଜବିହାରୀପୁର ଶାସନରେ "ଶାସନୀ-ବ୍ରାହ୍ମଣ" ନାମରେ ପ୍ରଖ୍ୟାତ ଥିଲେ । ପୂଜାପାଠ ଓ ପୁରୋହିତ କର୍ମକାଣ୍ଡରେ ଅପ୍ରତିଦ୍ୱନ୍ଦ୍ୱୀ ତାଙ୍କ ବଡ଼ ପୁଅ "ସୌରୀ ମିଶ୍ରେ"ଙ୍କୁ ସେତେବେଳେ ନ ଜାଣେ କିଏ ? ଓମପଡ଼ା ରାଜପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ କନ୍ୟା ରୋହିଣୀ ଦେବୀଙ୍କୁ ସୌରୀ ଚରଣ ମିଶ୍ର ବିବାହ କରିଥିଲେ । ସୌରୀ ମିଶ୍ରଙ୍କର ସାତପୁଅ ଓ ଦୁଇଝିଅ ବିଶିଷ୍ଟ ପରିବାରକୁ ଚଳାଇ ନେବାରେ ସେ ଅବଶ୍ୟ ଦରିଦ୍ର ଥିଲେ । ତଥାପି ସେ ଦୁଃଖ କଷ୍ଟରେ ଭାଙ୍ଗି ପଡ଼ି ନ ଥିଲେ । ଜ୍ୟେଷ୍ଠପୁତ୍ର ନୀଳମଣି, ଦ୍ୱିତୀୟ ପୁତ୍ର ଦାମୋଦର ·····ସପ୍ତମ ପୁତ୍ର ଗଦାଧର··· ଏହିପରି ନଅଟି ପିଲାମାନଙ୍କ ପାଠପଢ଼ା ପ୍ରତି ପିତା ସୌରୀ ଚରଣ ସର୍ବଦା ସଚେତନ ଥିଲେ । ବୈଦ୍ୟେଶ୍ୱର ଗାଁ ଚାଟଶାଳୀରେ 'ନୀଳମଣି ଶିକ୍ଷାରମ୍ଭ' କରିଥିଲେ । ସେତେବେଳେ ଗାଁ ମୁଣ୍ଡରେ ବସୁଥିବା ଅବଧାନଙ୍କ ପାଖରେ ପିଲାମାନେ ପ୍ରଥମେ "ଖଡ଼ିପାଠ"ରେ ଶିକ୍ଷାରମ୍ଭ କରୁଥିଲେ । ବର୍ତ୍ତମାନପରି ସ୍କୁଲ, ସେତେବେଳେ ନ ଥିଲା । ସେତେବେଳେ ଅବଶ୍ୟ ଆସ୍ତେ ଆସ୍ତେ ସ୍କୁଲ ପ୍ରତିଷ୍ଠା କରାଯାଉଥାଏ । ଲୋକେ ପ୍ରଥମେ ଇଂରେଜ ସରକାରଙ୍କ ସ୍କୁଲ ଓ ପାଠ୍ୟକ୍ରମ ପ୍ରଚଳନକୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ତେଣୁ ସେମାନେ ପିଲାମାନଙ୍କୁ ଏହି ସ୍କୁଲରେ ନ ଛାଡ଼ି ଗାଁ ହିଁ ବ୍ୟବସ୍ଥାନୁସାରେ "ଚାଟଶାଳୀ"ରେ ପଢ଼ାଉଥିଲେ ।

୧୮୭୮-୮୦

ନୀଳମଣିଙ୍କର ପାଠପଢ଼ାରେ ଭରି ମନ । ଅବଧାନଙ୍କ ପ୍ରିୟଛାତ୍ର ହୋଇଗଲେ । ଚଟ୍ଟଶାଳୀ ପାଠ ଶେଷହେଲା ପରେ ତାଙ୍କ ବାପା ନୂଆ ହୋଇ ଖୋଲୁଥିବା "ପ୍ରାଇମେରୀ ସ୍କୁଲ"ରେ ନାମ ଲେଖାଇ ଦେଲେ । ନୀଳମଣି ଖୁବ୍ ଭଲ ପଢ଼ିଲେ ଓ ସରକାରଙ୍କ ପାଖରୁ ବୃତ୍ତି ପାଇଲେ । ଶିକ୍ଷକ ମହଲରେ ନିଶ୍ଚିତ ହେଲେ ଯେ "ନୀଳମଣି ଅନନ୍ୟ ଓ ଅସାଧାରଣ ଛାତ୍ର ହେବ , ବଡ଼ ହେଲେ ଦେଶର ନାମ ରଖିବ ।"

୧୮୮୦-୮୬ :

ବୈଦ୍ୟେଶ୍ୱର ପ୍ରାଥମିକ ବିଦ୍ୟାଳୟରେ ପାଠପଢା ସାରି ନୀଳମଣି ଚରିକା ମଧ୍ୟ ଓଡ଼ିଆ ( Middle Vernacular ) ସ୍କୁଲରେ ଆସି ନାମ ଲେଖାଇଲେ । ଏହି ମାଧ୍ୟମିକ ଶିକ୍ଷାପ୍ରାପ୍ତ ସମୟରେ ତାଙ୍କର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଘଟିବାକୁ ଆରମ୍ଭ କଲା । ନୂଆ ନୂଆ କଥା ଓ ନୂଆ ନୂଆ ବହି ସଂଗ୍ରହ ଓ ବହିର୍ଜଗତ ସମ୍ପର୍କରେ ସେ ନିଜର ଜ୍ଞାନର ପରିଧିକୁ ବଢ଼ାଇବାରେ ଲାଗିଲେ । ସେତେବେଳେ ଓଡ଼ିଆ ଓ ବଙ୍ଗଳାରେ ଯେଉଁ ପତ୍ର ପତ୍ରିକା, ଖବରକାଗଜ ପ୍ରଥମେ ପ୍ରଥମେ ବାହାରୁଥିଲା, ସେଗୁଡ଼ିକୁ ସେ ମନ ଦେଇ ପାଠ କରୁଥିଲେ ।

ପାଠପଢ଼ା ସହିତ ଏହି ସବୁ ଦିଗପ୍ରତି ମନ ବଳାଇ ନୀଳମଣି ଖର୍ଚ୍ଚାନ୍ତ ହେଉଥିଲେ ମଧ୍ୟ ସେଥିରୁ ନିବୃତ୍ତ ହେଉ ନ ଥିଲେ । ତେଣୁ ଆର୍ଥିକ ଅଭାବ ତାଙ୍କୁ ଲାଗି ରହିଥିଲା । ପାଠପଢା ଖର୍ଚ୍ଚ ମଧ୍ୟ ତାଙ୍କ ବାପା ଘରୁ ନିୟମିତ ଦେଇ ପାରୁ ନ ଥିଲେ । ତଥାପି ନୀଳମଣି ଭାଙ୍ଗି ନ ପଡ଼ି ନିଜ ଅଧ୍ୟବସାୟକୁ ତେଜସ୍ୱାନ୍ କରିବାକୁ ବଦ୍ଧପରିକର ହେଲେ । ସେତେବେଳେ କିରୋସିନି ତେଲରେ ବତୀ ଜଳୁଥିଲା । ମାତ୍ର ତାହା ଖୁସି ମହଙ୍ଗା ଥିଲା । ବେଳେବେଳେ ମିଳୁ ନ ଥିଲା ପରି ଅବସ୍ଥା ଥିଲା । କିରୋସିନି ବଦଳରେ ଲୋକେ ପୁନ୍ନାଗ, କରଞ୍ଜ ତେଲରେ ଆଲୁଅ ଜାଳି ଆସୁଥିଲେ । ଏ ସବୁ ତେଲ ପାଇଁ ତ ପଇସା ଦରକାର ! ନୀଳମଣି ଆଣିବେ କେଉଁଠୁଁ ? ଯେ କୌଣସି ଉପାୟରେ ପାଠ ପଢ଼ିବାକୁ ହେବ । ସେଥିପାଇଁ ସେ ଏକ ଉପାୟ କଲେ । ଜଳଅର ଗଛର ମଞ୍ଜିକୁ ସଂଗ୍ରହକରି ଆଣିଲେ । ତାକୁ ଛେଚି ତାର ରସ ବାହାର କଲେ । ସେ ରସରୁ ତେଲ ବାହାର କରି, ତାକୁ ଜାଳି ସେ ରାତିରେ ପାଠ ପଢ଼ୁଥିଲେ । ଅନେକ ସମୟରେ ଜହ୍ନ ଆଲୁଅରେ ବସି ରାତିରେ ପାଠ ପଢ଼ୁଥିଲେ । ପିଲାଟି ଦିନରୁ ନୀଳମଣି ଗୀତ, ଜଣାଣ ଓ ସାହିତ୍ୟାନୁରାଗୀ ଥିଲେ । ସେଥିପାଇଁ ଅଭାବ, ଅନାଟନ ତାଙ୍କ ବିଦ୍ୟାର୍ଥୀ ଜୀବନରୁ ସହଚରି ହେଲା । ତେଣୁ ସେ ଅତ୍ୟନ୍ତ ଦୃଢ଼ମନା ହୋଇ

ଯାହା ଶୁଣୁଥିଲେ, ତାହାକୁ ସେ ତତ୍‌କ୍ଷଣାତ୍ ଆରମ୍ଭ କରି ଦେଉଥିଲେ । "ମନର ବଳ ଟାଣ ନ ରହିଲେ ମଣିଷ ଦୁଃଖରେ ଭାଙ୍ଗିପଡ଼େ ।"—ସେଥିପାଇଁ ସେ କୌଣସି ପରିସ୍ଥିତିରେ ହତାଶ ହେଉନଥିଲେ । ପାଖରେ ପଇସା ନ ଥିଲେ ସେ ବରଂ ଉପବାସ ରହିବାକୁ ଶ୍ରେୟ ମଣୁଥିଲେ କିନ୍ତୁ କାହା ପାଖରେ ପଇସା ପାଇଁ ହାତ ପତାଇ ନ ଥିଲେ ।

କ୍ରମଶଃ ତାଙ୍କ ଅଭାବ ବଢ଼ିବାକୁ ଲାଗିଲା । ପାଠପଢ଼ା ଉପରେ ବ୍ୟାଘାତ ଆସିଲା । କରିବେ କ'ଣ ? ଅଳ୍‌ବତ ପାଠ ପଢ଼ିବାକୁ ପଡ଼ିବ ଏବଂ ଲୋକଙ୍କୁ ପାଠ ପଢ଼ାଇବାକୁ ପଡ଼ିବ । ସେ ଦଉରେ ଖର୍ଚ୍ଚ ଆଉ କମେଇ ହେବନାହିଁ ବୋଲି ଭାବି ସେ ଉନେ ଗୋଟିଏ ଉପାୟ ଚିନ୍ତାକଲେ । ନୀଳମଣିଙ୍କ ହସ୍ତାକ୍ଷର-ଗୁଡ଼ିକ ଅତି ସୁନ୍ଦର ଥିଲା । ତାଙ୍କର ଏହି ପାରଦର୍ଶିତା ଚଉଁକା ସବ୍‌ରେଜିଷ୍ଟ୍ରାର ଅଫିସ ଓ ଦପ୍ତରରେ ଥିବା ମୋହରିରମାନଙ୍କୁ ଅଜଣା ରହିଲା ନାହିଁ । ସେମାନେ ନୀଳମଣିଙ୍କୁ ଡାକି ଜମିଜମା-ଦଲିଲଗୁଡ଼ିକୁ ଉତ୍ତାରିବା କାର୍ଯ୍ୟରେ ନିଯୁକ୍ତ କଲେ । ସେଥିପାଇଁ ତାଙ୍କୁ ପାରିଶ୍ରମିକ ମିଳିଗଲା ଓ ସେଥିରେ ସେ ଭବିଷ୍ୟତରେ ପଢ଼ାଖର୍ଚ୍ଚ, ସମ୍ବାଦପତ୍ର କିଣା ଓ ଯୋଗସୂତ୍ର ସ୍ଥାପନାଦି ଖର୍ଚ୍ଚ ତୁଠାଇ ସଞ୍ଚୟକରି ପାରିଲେ । ନୀଳମଣି ୧୮୮୨ରେ ମିଡ଼ିଲ ଭର୍ଣ୍ଣାକୁଲାରରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ ।

୧୮୮୨-୮୩

ଚଉଁକାରେ ପଢ଼ାଶେଷ କରି ନୀଳମଣି କଟକ ଆସିବାକୁ ଉଦ୍ୟମ କଲେ । ବହି କିଣିବା ଆଳରେ ମାଆଙ୍କଠାରୁ ମାତ୍ର ଛଅଣା ପଇସା ମାଗି ସେ କଟକ ଚାଲି ଆସିଲେ । କଟକରେ ଗୋବିନ୍ଦ ରଥଙ୍କ ଘରେ ସେ ଆଶ୍ରିତ ହେଲେ । କଟକରେ ପଢ଼ିବାକୁ ବହୁତ ଚେଷ୍ଟା କରି ବିଫଳ ହେଲେ । ଶେଷରେ ୧୮୮୩ରେ କଲିକତା ନଗରୀରେ ହେଉଥିବା ଆନ୍ତର୍ଜାତିକ କୃଷି ପ୍ରଦର୍ଶନୀ ଗୋବିନ୍ଦ ରଥଙ୍କ ସହିତ ଦେଖି, ନୀଳମଣି ରିକ୍ତ ହସ୍ତରେ କଟକ ଫେରିବା ପରେ, ଗାଁକୁ ଫେରି ଆସିବାକୁ ଚିନ୍ତା କରୁଥିଲେ । ଏହି ସମୟରେ ଦୈବାତ୍ ବାବୁ ରାଧାନାଥ ରାୟଙ୍କ ସହିତ ତାଙ୍କର ସାକ୍ଷାତ୍ ହୋଇଗଲା । ନୀଳମଣିର ଦୁଃଖ ଗୁହାରି ଶୁଣି ରାଧାନାଥ ତାଙ୍କୁ କଲମ, କାଗଜ ଦେଲେ ହସ୍ତାକ୍ଷର ଜାଣିବାପାଇଁ । ନୀଳମଣି ସୁନ୍ଦର ଅକ୍ଷରରେ "କମଳ ଲୋଚନ ଶ୍ରୀହରି କରରେ ଶଙ୍ଖ, ଚକ୍ର ଧାରୀ ।" ଲେଖିଦେଲେ ବାବୁ ରାଧାନାଥ ଖୁସି ହୋଇ ତାଙ୍କୁ ଦଶଟଙ୍କା ଦେଇ, ପ୍ରତିଦିନ ତାଙ୍କ ଘରକୁ ଆସି ସାହିତ୍ୟ ଆଳାପ ଓ ମହାଯାତ୍ରା ପାଣ୍ଡୁଲିପି ସୁନ୍ଦର ଭାବରେ ଉତ୍ତାରି ଦେବାକୁ ପରାମର୍ଶ ଦେଇଲେ । ସେତେବେଳେ ଗ୍ରାମାଞ୍ଚଳରେ ସ୍କୁଲ ସ୍ଥାପନା କରାଯାଉ ଥାଏ ।

ଏ ସବୁ କାର୍ଯ୍ୟ ସମ୍ପାଦନ ଦାୟିତ୍ୱରେ ସ୍କୁଲ ବିଭାଗୀୟ ଇନ୍‌ସପେକ୍ଟର ବାବୁ ରାଧାନାଥ ରାୟ ଥାଆନ୍ତି । ସେ ଚଡ଼ାମ୍ବା-ଗୋପୀନାଥପୁର ଗାଁ ପ୍ରାଇମେରୀ ସ୍କୁଲର ପ୍ରଥମ ଶିକ୍ଷକ ଭାବରେ ନୀଳମଣିଙ୍କୁ ନିଯୁକ୍ତ କରାଇ ଦେଲେ ।

୧୮୮୩-୮୬

ଗୋପୀନାଥପୁର ପ୍ରାଇମେରୀ ସ୍କୁଲରେ ମାତ୍ର ଅଳ୍ପଦିନର ଶିକ୍ଷକତାରେ ନୀଳମଣିଙ୍କର ସୁନାମ ଚାରିଆଡ଼େ ବ୍ୟାପି ଗଲା । ତାଙ୍କ ଶିକ୍ଷାଦାନ ଓ ବ୍ୟୁତ୍ପତ୍ତିରେ ପିଲାମାନେ ଖୁବ୍ ପ୍ରଭାବିତ ହେଲେ । ଗୋପୀନାଥପୁର ସ୍କୁଲର ସୁନାମ ଚାରିଆଡ଼କୁ ବ୍ୟାପିଲା ଓ ଦୂରଦୂରାନ୍ତରୁ ପିଲାମାନେ ଆସି ଏହି ସ୍କୁଲରେ ପଢ଼ିବାକୁ ଲାଗିଲେ ।

ଗୋପୀନାଥପୁର ସ୍କୁଲରେ ଶିକ୍ଷକତା କରିବା ସମୟରେ କିଶୋର ନୀଳମଣିଙ୍କର ଚିନ୍ତା ଓ ଚେତନାରେ ଦ୍ରୁତ ପରିବର୍ତ୍ତନ ଘଟିବାକୁ ଲାଗିଲା । ସେ ଆଉ ଭବିଷ୍ୟତରେ ପାଠପଢ଼ିବା ବାସନା ନ ରଖି ଆଜୀବନ ଜନସେବା କରିବାକୁ ବ୍ରତୀ ହେଲେ । ସେ ଲକ୍ଷ୍ୟ କଲେ ଯେ, ସ୍କୁଲ ଆସୁଥିବା କିଛି ସଂଖ୍ୟକ ପିଲାଏ ସିନା ପାଠପଢ଼ି ପାରୁଛନ୍ତି, କିନ୍ତୁ ଅଞ୍ଚଳର ବ୍ୟାପକ ପିଲାମାନେ କିପରି ପାଠପଢ଼ିବାକୁ ସୁଯୋଗ ପାଇବେ, ସେଥିପାଇଁ ଚିନ୍ତା ପ୍ରକଟ କରିବାକୁ ଲାଗିଲେ । କାରଣ, ଶିକ୍ଷାବିନା ଏହି ସମାଜ ଓ ମଣିଷର ବିକାଶ ସମ୍ଭବ ନୁହେଁ ବୋଲି ତାଙ୍କର ହୃଦ୍‌ବୋଧ ହେଲା, "ଯେତେଦିନ ଯାଏ ଲୋକେ ଶିକ୍ଷିତ ହୋଇ ନ ଥିବେ, ସେତେଦିନ ଯାଏ ଦାରିଦ୍ର୍ୟରେ ସଢ଼ୁଥିବେ ।" ଏହାର ବିହିତ ପ୍ରତିକାର ବ୍ୟବସ୍ଥା କରିବାକୁ ହେବ—ଏହି ଚିନ୍ତା ଓ ଚେତନାରେ ଗୋପୀନାଥପୁର ଗ୍ରାମରେ ନୀଳମଣି ନୈଶବିଦ୍ୟାଳୟଟିଏ ଖୋଲିଲେ । ନିଜ ବୁଦ୍ଧିବିଦ୍ୟାରେ ସେ ଏଥିପାଇଁ ଜନମତ ସୃଷ୍ଟିକରି ଦୁଃଖୀ, ଦରିଦ୍ର ପିଲା ଓ ଅକାଳ ବୃଦ୍ଧଙ୍କୁ ନୈଶବିଦ୍ୟାଳୟରେ ନାମ ଲେଖାଇଲେ ଓ ନିଜେ ଅବୈତନିକ ଶିକ୍ଷକ ଭାବରେ ନୈଶବିଦ୍ୟାଳୟ ଚଳାଇଲେ । ତମସୁକ କାଗଜଲେଖା ଓ ଡାଂକଆ-ହାଉସ କରିଆରେ ସେ ଅର୍ଥ ରୋଜଗାର କରି ସେ ଅନୁଷ୍ଠାନ ଚଳାଇଲେ । ଏତଦ୍ୱାରା ଗାଁ ଗଣ୍ଡାର ଚାଷୀ, ମୂଲିଆ ସମସ୍ତେ ପାଠ ପଢ଼ିବାକୁ ସୁଯୋଗ ପାଇଲେ । ଆଜକୁ ଏକଶହ ବର୍ଷ ତଳର ଜଣେ ପ୍ରାଇମେରୀ ସ୍କୁଲ-ଶିକ୍ଷକ ଏପରି ଅଭୂତପୂର୍ବ ଅବଦାନ ସୃଷ୍ଟି କରିଥିଲେ, ଏକଥା ଆଜିର ଓଡ଼ିଶା ବାହିଁକି ଭାରତବାସୀ ମଧ୍ୟ କଳ୍ପନା କରି ନ ଥିବେ ।

କିଶୋର ବୟସରୁ, ଏଇ ପ୍ରାଥମିକ ଶିକ୍ଷକତା ବେଳରୁ ନୀଳମଣିଙ୍କର ସାରସ୍ୱତ ପ୍ରତିଭାର ଉନ୍ମେଷ ଘଟିଥିଲା ଓ ସେ କ୍ରମଶଃ ସମାଜ ସେବାପ୍ରତି

ଆକୃଷ୍ଟ ହେବାକୁ ଲାଗିଲେ । ସେ ହିଁ ହେଉଛନ୍ତି ଓଡ଼ିଶା ତଥା ଭାରତବର୍ଷର ପ୍ରଥମ ନୈଶବିଦ୍ୟାଳୟର ପ୍ରତିଷ୍ଠାତା ଓ ପ୍ରଥମ ଅବୈତନିକ ଶିକ୍ଷକ । ପ୍ରଚଳିତ ସମାଜର ନାନାଦି କୁସଂସ୍କାର, ଧର୍ମାନ୍ଧତା ଓ ବିଭେଦଗ୍ରସ୍ତତା ସତ୍ତ୍ୱେ ନୀଳମଣି ଆପଣା ସାରସ୍ୱତ କୁହୁକ ସ୍ପର୍ଶରେ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଗୋପୀନାଥପୁର ପ୍ରାଥମିକ ଓ ନୈଶ ବିଦ୍ୟାଳୟରେ ଏକଜୁଟ୍ କରାଇଥିଲେ । ଏଭଳି ଦୃଷ୍ଟାନ୍ତ ସମକାଳୀନ ଓଡ଼ିଶାରେ ବିରଳ । ଏହି ଶିକ୍ଷକତା ଓ ଅନୁଷ୍ଠାନ ପରିଚାଳନା କାଳରେ ନୀଳମଣି ଓଡ଼ିଆ କାବ୍ୟ, କବିତା ଓ ପ୍ରବନ୍ଧ ରଚନା ପ୍ରତି ଅନୁରାଗୀ ହେଲେ । ସେତେବେଳେ ତାଙ୍କ ଲେଖା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହେବାକୁ ଲାଗିଲା । ଲୋକେ ଖୁସି ହୋଇ ଦିନେ ତାଙ୍କୁ ବଡ଼ାମ୍ବା ରାଜପ୍ରାସାଦକୁ ନେଇଗଲେ । ରାଣୀମାଆ ନୀଳମଣିଙ୍କୁ ବହୁତ ଆଦର ଯତ୍ନ କଲେ । ଆପଣା କବିତା ରଚନା, ଗୀତ ଓ ଜଣାଣ ଆବୃତ୍ତିରେ ନୀଳମଣି ସେଦିନ ଆୟୋଜିତ ରାଜସଭାକୁ ବିମୁଗ୍ଧ କଲେ ଏବଂ ରାଜୋଚିତ ସର୍ବଶ୍ରେଷ୍ଠ ସମ୍ମାନ "ବିଦ୍ୟାରତ୍ନ" ଉପାଧିରେ ନୀଳମଣି ଭୂଷିତ ହେଲେ । ତାଙ୍କ ମୁଣ୍ଡରେ ରାଜମାତା ପାଟଶାଢ଼ୀ-ମଥା ବାନ୍ଧି ସମ୍ମାନିତ କରାଇଥିଲେ । ସେହିଦିନଠାରୁ ଶିକ୍ଷକ ନୀଳମଣି ମିଶ୍ର, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ନାମରେ ପ୍ରଖ୍ୟାତ ହେଲେ ।

ଏହି ଖବର ଚାରିଆଡ଼େ ଖେଳିଗଲା । ଉତ୍କଳର କଳା ଓ ସାହିତ୍ୟ ପ୍ରେମୀ ଏବଂ ଜାତିପ୍ରାଣ କତିପୟ ରାଜାରାଜୁଡ଼ା ପ୍ରମୁଖ ଉଚ୍ଚକୋଟୀର ଭଦ୍ରବ୍ୟକ୍ତିମାନେ ଅଚିରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ବିଚକ୍ଷଣ ପ୍ରତିଭା ପ୍ରତି ଆକୃଷ୍ଟ ହୋଇ ନିଜ ନିଜର ରାଜଦରବାର ନିମନ୍ତ୍ରିତ କରିବାକୁ ବ୍ୟାକୁଳ ହୋଇପଡ଼ିଲେ । ଉଭୟ ପ୍ରାଥମିକ ଓ ନୈଶ ବିଦ୍ୟାଳୟ ପରିଚାଳନା କ୍ଷେତ୍ରରେ ତାଙ୍କର ଅନ୍ୟ ଶିକ୍ଷକମାନଙ୍କ ସହିତ ମତାନ୍ତର ହେଲା । ସେମାନେ ମିଶି ଚକ୍ରାନ୍ତ କରି ବିଦ୍ୟା-ରତ୍ନଙ୍କୁ ବଡ଼ାମ୍ବାରୁ ହଟାଇବାକୁ ଚେଷ୍ଟା କଲେ । ବଡ଼ାମ୍ବାରୁ "ବାମରା" ହସ୍ତଲିଖିତ ଏକ "ଜାଲ୍ ଚିଠି" ତାଙ୍କୁ ଡାକରୁ ମିଳିଲା । ସେଥିରେ ବାମଣ୍ଡା ଦେବଗଡ଼ରେ ଶିକ୍ଷକତା ପାଇଁ ଆମନ୍ତ୍ରଣ" ଥିଲା । କ୍ରମଶଃ ବଡ଼ାମ୍ବାରେ ତାଙ୍କୁ ନିରର୍ଥକ ତାଡ଼ନାର ଶିକାର ହେବାକୁ ପଡ଼ିଥିଲା । ତେଣୁ ସେ ଅନ୍ୟ ଉପାୟ ନ ଦେଖି, ସେଠାରୁ ସେଠାରୁ ଚାକିରି ଛାଡ଼ି ବାମଣ୍ଡା ଚାଲିଗଲେ ।

୧୮୮୭-୮୯

ଦୁର୍ଗମ ଓ ସୁଦୀର୍ଘ ବଣ ପାହାଡ଼ୀ-ରାସ୍ତା ଅତିକ୍ରମ କରି ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ବାମଣ୍ଡା ରାଜ୍ୟରେ ପହଞ୍ଚିଲେ । ସେତେବେଳକୁ ବାସୁଦେବ ସୁଢ଼ଳ-ଦେବ ବାମଣ୍ଡାରେ ରାଜା ଥାଆନ୍ତି । କଟକରେ ଥିବା ତାଙ୍କ "ସୁଢ଼ଳ ପ୍ରେସ"ରୁ ଚତୁର୍ଭୁଜ ପଟ୍ଟନାୟକଙ୍କ ସମ୍ପାଦନାରେ 'ସଂସ୍କାରକ' ନାମକ ପତ୍ରିକା ୧୮୮୩ ରୁ ବାହାରୁଥିଲା । ସେଥିରେ ବିଦ୍ୟାରତ୍ନଙ୍କ ନାନାଦି ପ୍ରବନ୍ଧ

ରଚନା ପ୍ରକାଶିତ ହୋଇଥିଲା ଓ ରାଜା ବାସୁଦେବ ତାଙ୍କ ବିଦ୍‌ବତ୍ତାର ପରିଚୟ ଆଗରୁ ପାଇଥିଲେ । ରାଜା ବିଦ୍ୟାରତ୍ନଙ୍କୁ ତାଙ୍କ "ଶତ୍ରୁ" ଦେଇଥିବା "ନକଲ - ପୋଷ୍ଟାଲ ଚିଠି" ରେ ବିସ୍ମିତ ନ ହୋଇ, ତାଙ୍କୁ ଆଶ୍ରୟ ଦେଇଥିଲେ । ଏହି ଅଦୃଷ୍ଟ ଶତ୍ରୁଙ୍କ ଚକ୍ରାନ୍ତବଳୟରୁ ନୀଳମଣି ବିଦ୍ୟାରତ୍ନ ଅମ୍ଭରତର ସନ୍ତାନ ଭାବରେ ବାମଣ୍ଡା ଦରବାରରେ ପରିଗଣିତ ହୋଇ-ଥିଲେ । ସେହିତବେଳକୁ ଅର୍ଥାତ୍ ରାଜା ବ୍ରଜସୁନ୍ଦର ଦେବଙ୍କ ରାଜତ୍ୱ କାଳରେ ବାମଣ୍ଡାରେ ଗୋଟିଏ ସଂସ୍କୃତ ବିଦ୍ୟାଳୟ ଓ ଗୋଟିଏ ଓଡ଼ିଆ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ଥିଲା । ରାଜା ବାସୁଦେବ ସୁଢ଼ଳଦେବ ରାଜକୁମାର ଓ ଉଚ୍ଚ ଶିକ୍ଷାଭିଳାଷୀ ପ୍ରଜା-ସାଧାରଣଙ୍କ ସନ୍ତାନଙ୍କ ଉଚ୍ଚତର ଶିକ୍ଷାଲାଭ ନିମନ୍ତେ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ୧୮୮୨ ମସିହାରେ ପ୍ରତିଷ୍ଠା କରିଥିଲେ । ଏହା "ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟ" ନାମରେ ପ୍ରଖ୍ୟାତ ଥିଲା ଏବଂ ଏହା କଲିକତା ବିଶ୍ୱବିଦ୍ୟାଳୟର ସ୍ୱୀକୃତି ଲାଭ କରିଥିଲା । କଲିକତାର ବିଶିଷ୍ଟ ଶିକ୍ଷାବିତ୍ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ପରାମର୍ଶ କ୍ରମେ, କଲିକତାର ସାହିତ୍ୟିକ ବିଜୟ ଚନ୍ଦ୍ର ମଜୁମଦାର, ବି.ଏ. ଏହି ରାଜକୁମାର ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତ ପାଇଥିଲେ । ପ୍ରଧାନ ଶିକ୍ଷକ ମଜୁମଦାରଙ୍କ ସହକାରୀ ଓ ଦ୍ୱିତୀୟ ଶିକ୍ଷକ ଭାବରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କୁ ରାଜା ସୁଢ଼ଳଦେବ ନିଯୁକ୍ତ କରିଥିଲେ । ବିଦ୍ୟାରତ୍ନଙ୍କ ଅସାଧାରଣ ବ୍ୟୁତ୍ପତ୍ତି ଓ ଶିକ୍ଷକତାରେ ସନ୍ତୁଷ୍ଟ ହୋଇ ରାଜା ସୁଢ଼ଳଦେବ ତାଙ୍କୁ ଶିକ୍ଷା ବିଭାଗରୁ ଅନ୍ୟ ବିଭାଗକୁ ଉତ୍ତୀର୍ଣ୍ଣ କରି ରାଜ-ଦରବାରର ଓକିଲ ଭାବରେ ନିଯୁକ୍ତ କରିଥିଲେ । ଉଭୟ ଶିକ୍ଷକତା ଓ ପ୍ରଶାସନ କ୍ଷେତ୍ରରେ ପାରଦର୍ଶୀ ବିଦ୍ୟାରତ୍ନଙ୍କୁ ବାସୁଦେବ ୧୮୮୯ ମସିହାରେ ବାମଣ୍ଡା "ଜଗନ୍ନାଥ ବଲ୍ଲଭ ପ୍ରେସ"ରୁ ପ୍ରକାଶିତ ସାପ୍ତାହିକ "ସମ୍ବଲପୁର ହିତୈଷିଣୀ" ପତ୍ରିକାର ମୁଖ୍ୟ—ସମ୍ପାଦକ ଭାବରେ ନିଯୁକ୍ତ କରିଥିଲେ ।

୧୮୮୯-୧୯୦୬ :

ସାହିତ୍ୟାନୁରାଗୀ ରାଜା ସୁଢ଼ଳଦେବ ବାମଣ୍ଡା ରାଜ୍ୟକୁ ଏକ ଆଦର୍ଶ ରାଜ୍ୟ କରି ଗଢ଼ିବାକୁ ଉଦ୍ୟତ ଥିଲେ । ଏହି ଅଭିପ୍ରାୟରେ ସେ "ଜଗନ୍ନାଥ ବଲ୍ଲଭ ପ୍ରେସ" ଓ ସାପ୍ତାହିକ "ସମ୍ବଲପୁର ହିତୈଷିଣୀ" ( Sambalpur Patriot ) ପତ୍ରିକାକୁ ସୁସଂଗଠିତ କରିବାକୁ ଉଦ୍ୟମ କରୁଥିଲେ । କଟକରେ ଥିବା "ସୁଢ଼ଳ ପ୍ରେସ୍"ରୁ ଅନ୍ୟ ଏକ ମାସିକ ପତ୍ରିକା "ସେବକ" ଭାବଗ୍ରାହୀ ଦାସଙ୍କ ସମ୍ପାଦନାରେ ପ୍ରକାଶ ପାଇଲା । ମାତ୍ର ଏଥିରେ କେତେକ ଅପ୍ରିୟ ଲେଖା ପ୍ରକାଶ ପାଇବାରୁ ବିବାଦ ସୃଷ୍ଟି ହେଲା । ଫଳରେ "ସୁଢ଼ଳ ପ୍ରେସ"ର କେତେକାଂଶ ଯନ୍ତ୍ରପାତିକୁ

ବାମଣ୍ଡା ଅଣାଯାଇ "ଜଗନ୍ନାଥ ବଲ୍ଲଭ ପ୍ରେସ୍"ରେ ସାମିଲ କରାଯାଇ କଟକ ପ୍ରେସକୁ ବନ୍ଦୀ କରି ଦିଆଯାଇଥିଲା । ଉଲ୍ଲିଖିତ ଦୃଷ୍ଟାନ୍ତ ବିଦ୍ୟାରତ୍ନଙ୍କ ବଳିଷ୍ଠ ପ୍ରଶାସନିକ କାର୍ଯ୍ୟଦକ୍ଷତାର ନମୁନା ଅଟେ ।

"ସମ୍ବଲପୁର ହିତୈଷିଣୀ" ପତ୍ରିକା ପ୍ରକାଶନର ପୂର୍ବେ ଅର୍ଥାତ୍ ୪୦ବର୍ଷ ମଧ୍ୟରେ ୪୮ଟି ପତ୍ର ପତ୍ରିକା ଆବିର୍ଭୂତ ହୋଇ ଓଡ଼ିଶାର ସାହିତ୍ୟାକାଶକୁ ଆଲୋକିତ କରି ଅଧିକାଂଶ ବିଲୁପ୍ତ ହୋଇଯାଇଥିଲା । ମାତ୍ର ସମ୍ବଲପୁର–ହିତୈଷିଣୀର ଆବିର୍ଭାବ ବାମଣ୍ଡା ତଥା ଉତ୍କଳର ମୁଖ—ଉଜ୍ଜ୍ୱଳ କରିପାରିଥିଲା । ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ଓ "ସମ୍ବଲପୁର ହିତୈଷିଣୀ" ପୃଷ୍ଠପୋଷିକାରେ ବାମଣ୍ଡାରୁ ୧୮୯୩ରେ "ବିଜୁଳି," ୧୯୦୦ରେ "ଉତ୍କଳ ମଧୁପ" ଓ "ଆଲୋଚନା" ପ୍ରଭୃତି ପତ୍ରିକା ଆତ୍ମପ୍ରକାଶ କରିଥିଲା । ବାମଣ୍ଡା ତଥା ଉତ୍କଳର ସାରସ୍ୱତ ବାତାବରଣକୁ ପ୍ରୋଜ୍ଜ୍ୱଳ କରିଥିଲା । ବିଦ୍ୟାରତ୍ନଙ୍କ ଯୁଗାନ୍ତକାରୀ ସମ୍ପାଦନା ଏବଂ ସେ ବାମଣ୍ଡାକୁ ଆଦର୍ଶମୟ କରି ଗଠନ କରିବା ଦିଗରେ ବଦ୍ଧପରିକର ହୋଇ ଥିଲେ ।

ସାହିତ୍ୟ ଓ ସମ୍ବାଦ ପରିବେଷଣ ସହିତ ବିଦ୍ୟାରତ୍ନ କୃଷି, ଶିକ୍ଷା, ଶିଳ୍ପ, ବାଣିଜ୍ୟ ଓ ରାଜନୈତିକ ଓ ପ୍ରଶାସନିକ ସୋପାନକୁ ଅଗ୍ରାଧିକାର ଦେଲେ । ସେତେବେଳେ ଓଡ଼ିଆଭାଷୀ ଏହି ସମ୍ବଲପୁର ଅଞ୍ଚଳଟି ମଧ୍ୟପ୍ରଦେଶ ଶାସନ ଅନ୍ତର୍ଭୁକ୍ତ ଥିଲା ଏବଂ ସମ୍ବଲପୁର କୋର୍ଟ କଚେରୀରେ ଓଡ଼ିଆ ଭାଷା ବଦଳରେ ହିନ୍ଦୀ ଭାଷା ପ୍ରଚଳିତ ଥିଲା । ଏହାର ପ୍ରତିବାଦରେ "ସମ୍ବଲପୁର ହିତୈଷିଣୀ" ସ୍ୱର ଉତ୍ତୋଳନ କଲା । ସାରା ରାଜ୍ୟ ଓ ସମ୍ବଲପୁର ଅଞ୍ଚଳରେ ଚମକ ସୃଷ୍ଟି କଲା । ବିଦ୍ୟାରତ୍ନଙ୍କ ଉଦ୍ଦୀପ୍ତ, ଜ୍ୱାଳାମୁଖୀ ଲେଖାଦ୍ୱାରା ସମ୍ବଲପୁର ଜିଲ୍ଲା ଅଞ୍ଚଳରେ ଅଭୂତପୂର୍ବ ଜନଜାଗରଣ, ବିପ୍ଲବ ସୃଷ୍ଟି କରି ସମ୍ବଲପୁର କୋର୍ଟ କଚେରୀରୁ ହିନ୍ଦୀ ଭାଷା ଉଠାଇ ଓଡ଼ିଆ ଭାଷାର ପୁନଃ ପ୍ରଚଳନ କରାଇଥିଲେ । ତାଙ୍କର ଏହି ଅଭୂତପୂର୍ବ ସଫଳତାରେ ସେ ଅନେକ ନୂଆ ନୂଆ ସାରସ୍ୱତ ପ୍ରତିଭାଧରଙ୍କୁ ଲୋକଲୋଚନକୁ ଆଣିଥିଲେ । ପ୍ରାଚୀନ ଓ ନୂତନ ଲେଖକ, କବି ଓ ଶିଳ୍ପୀମାନଙ୍କ ଲେଖାକୁ ସେ ସମ୍ବଲପୁର ହିତୈଷିଣୀ ପତ୍ରିକାରେ ସନ୍ନିବେଶିତ କରି ବିଦ୍ୟାରତ୍ନ ବୃହତ୍ତମ ଉତ୍କଳୀୟ ସାଂସ୍କୃତିକ ଭିତ୍ତିଭୂମି ପ୍ରସ୍ତୁତ କରିଥିଲେ । ତାଙ୍କର ନିରବଚ୍ଛିନ୍ନ ପ୍ରେରଣା ପାଇ ନବ୍ୟପ୍ରତିଭାଧର ଗଙ୍ଗାଧର ମେହେର ଓ ଚନ୍ଦ୍ରମଣି ମହାନ୍ତି ପ୍ରମୁଖ କବି ଲୋକଲୋଚନକୁ ଆସିଥିଲେ । ବିଦ୍ୟାରତ୍ନ ସେମାନଙ୍କୁ ସାହାଯ୍ୟ ଓ ସହଯୋଗ କରି ନ ଥିଲେ ଉତ୍କଳର ଏହି ପ୍ରଖ୍ୟାତନାମା ସାହିତ୍ୟ ସାଧକଦ୍ୱୟ "ବଣ ମଲ୍ଲୀ" ହୋଇ ରହିଯାଇଥାନ୍ତେ । ସମ୍ବଲପୁର-ହିତୈଷିଣୀ-ସାହିତ୍ୟ ଗୋଷ୍ଠୀ ଭିତରେ ଓଡ଼ିଶାର ବହୁ ପ୍ରାବନ୍ଧିକ, ଗାଳ୍ପିକ,

ସମାଲୋଚକ, ଔପନ୍ୟାସିକ, ନାଟ୍ୟକାର ତଥା କବି ପ୍ରମୁଖ କୃତୀମାନେ ଏଥିରେ ପ୍ରକାଶ କରି ସାରସ୍ୱତ ପ୍ରତିଭାର ପରିଚୟ ପ୍ରଦାନ କରିଅଛନ୍ତି । ସେହି କୃତବିଦ୍ୟ ପ୍ରତିଭାବାନ ସାହିତ୍ୟିକମାନଙ୍କ ମଧ୍ୟରେ ରାଜା ବାସୁଦେବ, ସୁଢ଼ଳଦେବ, ଯୁବରାଜ-କବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ଜଳନ୍ଧର ଦେବ, ପଣ୍ଡିତ ଦାମୋଦର ମିଶ୍ର ପଦ୍ୟାଳଙ୍କାର ସାହିତ୍ୟିକ ବିଜୟ ଚନ୍ଦ୍ର ମଜୁମଦାର୍ (ଖେଡ଼ିଆ ନିବାସୀ) ରାଧାନାଥ ରାୟ (ବାଲେଶ୍ୱର), ଚନ୍ଦ୍ରମଣି ମହାନ୍ତି (ଭଦ୍ରକ), ଚତୁର୍ଭୁଜ ପଟ୍ଟନାୟକ (କଟକ), ରାମକୃଷ୍ଣ ସାହୁ (କଟକ), ଚନ୍ଦ୍ରମୋହନ ମହାରଣା (ବାଲେଶ୍ୱର), ସାଧୁଚରଣ ରାୟ (କଟକ), ଆର୍ତ୍ତତ୍ରାଣ ଶତପଥୀ (କଟକ), କପିଳେଶ୍ୱର ନନ୍ଦଶର୍ମା (ଭୁବନେଶ୍ୱର), ଜଗବନ୍ଧୁ ମହାପାତ୍ର (କଟକ), ଫକୀରମୋହନ ସେନାପତି (ବାଲେଶ୍ୱର), ଦାମୋଦର ପଟ୍ଟନାୟକ (ଢେଙ୍କାନାଳ), ଲକ୍ଷ୍ମୀ ନାରାୟଣ ସାହୁ (କଟକ), ଧରଣୀଧର ମିଶ୍ର (ସମ୍ବଲପୁର), ଗଙ୍ଗାଧର ମେହେର (ବରପାଲି), ଲକ୍ଷ୍ମଣ ମିଶ୍ର (ସମ୍ବଲପୁର), ମଧୁସୂଦନ ରାଓ (କଟକ), ନନ୍ଦକିଶୋର ବଳ (କଟକ), ବିଶ୍ୱନାଥ କର (କଟକ) ପ୍ରମୁଖ ଅନ୍ୟତମ ।

କ୍ରମଶଃ ''ସମ୍ବଲପୁର ହିତୈଷିଣୀ'' ବୃହତ୍ତମ ରାଜନୈତିକ ଓ ସାଂସ୍କୃତିକ ପଦକ୍ଷେପମାନ ନେବାକୁ ପ୍ରୟାସୀ ହେବାକୁ ଲାଗିଲା । ପତ୍ରିକାର ଆଭିମୁଖ୍ୟ ସମଦର୍ଶୀ ଥିଲା । ସପକ୍ଷ ଓ ବିପକ୍ଷ ଏହି ଦୁଇ ଗୋଷ୍ଠୀର ଲେଖକମାନଙ୍କୁ ସେ ସମାନ ଦୃଷ୍ଟିରେ ଦେଖୁଥିଲେ । ଫଳ ବିଶେଷରେ, ଏଥିପାଇଁ, ସେ ନାନା ହାଇରାଣ-ହର୍କତରେ ପଡ଼ିଛନ୍ତି; କିନ୍ତୁ ପତ୍ରିକାଟିର ଆର୍ଥିକ ସଙ୍କଟ କେବେ ଆସି ନ ଥିଲା । ପତ୍ରିକା-ସମ୍ପାଦକ-ଜୀବନର ଚରମ ଗୋପନୀୟତା ରକ୍ଷା କରିବାକୁ ଯାଇ ସେ ତାଙ୍କର ସମସ୍ତ ସୁଖ ଓ ସ୍ୱାଚ୍ଛନ୍ଦ୍ୟକୁ ବଳି ଦେବାକୁ କୁଣ୍ଠିତ ହୋଇ ନ ଥିଲେ । ବାମଣ୍ଡା ରାଜ୍ୟକୁ ଶିଳ୍ପ, ବାଣିଜ୍ୟ ଓ ଗମନାଗମନ ଦିଗରେ ଉତ୍କର୍ଷ-ମୟ କରି ଗଢ଼ି ତୋଳିବାରେ ବିଦ୍ୟାରତ୍ନ ନିର୍ଭୀକ ଓ ସାଲିସବିହୀନ କଲମ ଚଳାଇଥିଲେ । ସର୍ବଦା ''ସତ୍ୟପଥ''ରେ ଚାଲିବାକୁ ସେ ସମସ୍ତଙ୍କୁ ଆହ୍ୱାନ ଦେଇଥିଲେ :

''ହୋଇବେ ଏକତ୍ର ସର୍ବ ଦେବଗଣ,
କରିବେ ଯଦି ମୋ ଜୀବନ ହରଣ,
ନ ତେଜିବି ସତ୍ୟପଥ ସଦାଶ୍ରୟ
ଦେବି ନାହିଁ କେବେ ମିଥ୍ୟାକୁ ଆଶ୍ରୟ ।''

(ସମ୍ବଲପୁର ହିତୈଷିଣୀ)

୧୮୯୭ ମସିହାରେ ବାଗ୍ମୀ ବିଶ୍ୱନାଥ କର କର୍ତ୍ତୃକ "ଉତ୍କଳ ସାହିତ୍ୟ ପତ୍ରିକା" ପ୍ରକାଶନ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ଉନ୍ମୋଚନ ହୋଇଥିଲା ।

୧୮୯୩ ସେପ୍‌ଟେମ୍ବର ୧୬ ତାରିଖ (ଶନିବାର) ଦିନ—"ବିଜୁଳି ନାମକ ଆଉ ଏକ ପତ୍ରିକା ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରୁ ପ୍ରକାଶ ପାଇଲା । ସମାନ୍ତରାଳ ଗତିରେ, କଟକରୁ "ଇନ୍ଦ୍ରଧନୁ" ପତ୍ରିକା ବାହାରିଥିଲା । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ ରାଧାନାଥ ରାୟଙ୍କ ଦୋଷ ଦୁର୍ବଳତା ଛପାଇ ଉଭୟ ପତ୍ରିକାର ଲେଖକ ଗୋଷ୍ଠୀ ଯେଉଁ ଝଡ଼ ସୃଷ୍ଟି କରିଥିଲେ ତାକୁ ବିଦ୍ୟାରତ୍ନ ଆପଣା ସମଦର୍ଶୀ-ବିବେଚନାରେ ଉଭୟ ପକ୍ଷର ସ୍ରଷ୍ଟାଙ୍କୁ ସୁଧାରି ନେଇଥିଲେ । ୧୮୯୪ ଜାନୁଆରୀ ୨୫ ତାରିଖ ଦିନ ଇନ୍‌ସପେକ୍ଟର ରାଧାନାଥ ରାୟଙ୍କ ଆକ୍ରୋଶ ମନୋବୃତ୍ତି ଯୋଗୁ ଛାତ୍ର ଗୋପବନ୍ଧୁ ଦାସଙ୍କ ବୃତ୍ତି କାଟି ଦିଆଯାଇଥିଲା । ପରେ ସ୍କୁଲରୁ ଗୋପବନ୍ଧୁଙ୍କୁ ବିଦାୟ କରିଦେବାର ବ୍ୟବସ୍ଥା ହେବାବେଳେ ପ୍ରତ୍ୟୁତ୍ପନ୍ନ-ମତି ବିଦ୍ୟାରତ୍ନ ଉଭୟ ଗୁରୁ ରାଧାନାଥ ଓ ଛାତ୍ର ଗୋପବନ୍ଧୁଙ୍କ ମଧ୍ୟରେ ସୁସମ୍ପର୍କ ପୁନଃପ୍ରତିଷ୍ଠା କରାଇଥିଲେ ।

—ଏହି "ସତ୍ୟପଥ"ରେ ଅବିଚଳ ରହି ତାଙ୍କୁ ଶେଷରେ ଦିନେ ବାମଣ୍ଡାରାଜ୍ୟ ଛାଡ଼ିବାକୁ ପଡିଥିଲା । ସମ୍ବଲପୁର କୋର୍ଟ କଚେରୀରୁ ହିନ୍ଦୀ ଭାଷା ଉଠାଯାଇ ଓଡ଼ିଆ ପୁନଃ ପ୍ରଚଳନ କରାଯିବାପରେ କିଛି ଖଳଲୋକ ବିଦ୍ୟାରତ୍ନଙ୍କୁ ବାମଣ୍ଡାରାଜ୍ୟରୁ ବିତାଡ଼ନ କରିବା ପାଇଁ ସୁଯୋଗ ଖୋଜୁଥିଲେ ।

ରାଜଧାନୀ ଦେବଗଡ଼ର ଉତ୍ତର ଦିଗର ଅନତିଦୂରରେ ପ୍ରଧାନପାଟ ଜଳପ୍ରପାତ ଏକ ନିସର୍ଗ ପ୍ରାକୃତିକ ସୌନ୍ଦର୍ଯ୍ୟର ଲୀଳାସ୍ଥଳୀ । ସାନ୍ଧ୍ୟ-ସମୟରେ ବିଶେଷତଃ ଗ୍ରୀଷ୍ମକାଳରେ ରାଜା ପ୍ରାୟ ପ୍ରତିଦିନ ସାନ୍ଧ୍ୟଭ୍ରମଣାର୍ଥେ "ବସନ୍ତ ମଞ୍ଜରୀ" ବଙ୍ଗଳାରେ ଅବସ୍ଥାନ କରିଥାନ୍ତି । ରାଜାଙ୍କ ଚିତ୍ତବିନୋଦନ ପାଇଁ ସେଠାକୁ ବିଦ୍ୟାରତ୍ନଙ୍କୁ ଡକରା ପଡ଼େ । ଏହି ଅଭ୍ୟାସ କ୍ରମେ, ପୂର୍ବବର୍ଣ୍ଣିତ ଖଳଲୋକଙ୍କ ସମ୍ପର୍କରେ ଆସି ବିଦ୍ୟାରତ୍ନ ସେଠାରେ ମଦ୍ୟପାନ କରିବାକୁ ଲାଗିଲେ ଏବଂ ସେହି ସମୟରେ ତାଙ୍କ ବାସଭବନ ଉପରେ ଖଳଲୋକଙ୍କର ତାଡ଼ନା, ଲାଞ୍ଛନା ବୃଦ୍ଧି ପାଇଲା । ଏପରି ଅବାଞ୍ଛିତ ପରିସ୍ଥିତିରେ ପଡ଼ି ସେ ପ୍ରେସ ତହବିଲରୁ ତିନିଶହ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରି ପକାଇଥିଲେ । ସେହି ଖଳଲୋକମାନେ ରାଜାଙ୍କୁ ଏକଥା ଜଣାଇ ପ୍ରେସ ତହବିଲକୁ ସର୍କମିନ୍ ତଦନ୍ତ କରାଇଦେଲେ । ଏହା ଫଳରେ ତିନିଶତ ଟଙ୍କା ବିଦ୍ୟାରତ୍ନ-ଆତ୍ମସାତ୍ କରିଛନ୍ତି ବୋଲି ରାଜଦଣ୍ଡାଦେଶ ଘୋଷଣା କରାଗଲା । ଅନନ୍ୟୋପାୟ ହୋଇ ବିଦ୍ୟାରତ୍ନ ରାଧାନାଥ ରାୟଙ୍କଠାରୁ ସେହି ଟଙ୍କା ଆଣି ଭରଣା କରିଦେବାରୁ ରାଜଦଣ୍ଡରୁ ମୁକ୍ତ

ପାଇଲେ । କିନ୍ତୁ କଥିର ବିଡ଼ମ୍ବନା ଏହି ଯେ, ରାଧାନାଥ ରାୟ ତାଙ୍କ "ପାର୍ବତୀ" କାବ୍ୟକୁ "ସମ୍ବଲପୁର ହିତୈଷିଣୀ"ରେ ପ୍ରକାଶନ ପାଇଁ ଚାପ ପ୍ରୟୋଗ କଲେ । "ପାର୍ବତୀ" କାବ୍ୟ ଛପାଇ ଓଡ଼ିଆ ସଂସ୍କୃତିକୁ କଳଙ୍କିତ କରି ପାରିବେ ନାହିଁ ବୋଲି ବିଦ୍ୟାରତ୍ନ ଦୃଢ଼ମତ ପୋଷଣ କଲେ । ସେ କାବ୍ୟ ଛପିଲେ "ରାଜଦ୍ରୋହୀ" ଓ ନ ଛପିଲେ "ଗୁରୁଦ୍ରୋହୀ" ହେବା ଆଶଙ୍କାରେ ସେ ପ୍ରମାଦ ଗଣିଲେ । ତେଣୁ ସେ ଅଗତ୍ୟା ବାମଣ୍ଡା ଛାଡ଼ିବାକୁ ଶ୍ରେୟ ମନେକଲେ । ବାମଣ୍ଡା ଛାଡ଼ି ବିଦ୍ୟାରତ୍ନ ଗାଁ (ବାଙ୍କୀ)କୁ ଫେରିବା ବାଟରେ, ଖୋର୍ଦ୍ଧାରୋଡ଼-ଠାରେ ଖଲ୍ଲିକୋଟ ରାଜାଙ୍କ ସହିତ ସାକ୍ଷାତ ଲାଭ କରିଥିଲେ ଓ ଖଲ୍ଲିକୋଟ ଗମନ କରିଥିଲେ ।

ବିଦ୍ୟାରତ୍ନ ବାମଣ୍ଡା ଛାଡ଼ିବା ପୂର୍ବରୁ ୧୯୦୧ ମସିହାରେ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ସପ୍ତମ ଏଡ଼ୱାର୍ଡ଼ଙ୍କ ଅଭିଷେକୋତ୍ସବରେ ଯୋଗଦାନ କରିବାକୁ ଦିଲ୍ଲୀ ଅଭିମୁଖେ ଯାତ୍ରା କରିବାକୁ ପ୍ରସ୍ତୁତ ହୋଇଥିଲେ । ଏହି ସମୟରେ ନୀଳମଣି ବିଦ୍ୟାରତ୍ନ ଓ ପୁରୁଷୋତ୍ତମପୁରର ସବ୍-ରେଜିଷ୍ଟ୍ରାର ଦେଶପ୍ରାଣ ନରସିଂହ ଦାସ ଦୁହେଁ ବସି ବିଚାର କଲେ, "ଏତେଗୁଡ଼ାଏ ଟଙ୍କା ଦିଲ୍ଲୀ ଦରବାରରେ ରାଜା ସଲାମି ଦେବେ, ହେଲେ ଗାଇକୋୱାଡ଼ ବା ଜୟପୁର ମହାରାଜାଙ୍କ ପରି ରାଜା ମର୍ଦ୍ଦରାଜ କ'ଣ ଦରବାର-ସାମ୍ମୁଖ୍ୟ ଲାଇନ୍‌ରେ ଆସନ ପାଇପାରିବେ, ନାଁ ଖଲ୍ଲିକୋଟ ଜମିଦାରୀ ଆସନରେ ପଛରେ ବସି ରହିବେ ?" ଏକଥା ରାଜାଙ୍କୁ ସନ୍ତର୍ପଣରେ ବୁଝାଇବାକୁ ଚେଷ୍ଟା କଲେ । ବଙ୍ଗାଳି, ବିହାରି, ତେଲେଙ୍ଗାଙ୍କ ଦାଉରୁ ଓଡ଼ିଆଙ୍କୁ ରକ୍ଷା କରନ୍ତୁ , ଦେଶ-ମିଶ୍ରଣରେ ଓଡ଼ିଆ ଗୋଟିଏ ଜାତି ଭାବରେ ଭାରତରେ ପ୍ରତିଷ୍ଠାଲାଭ କରୁ ; ତାହା ହିଁ ହେଉ ରାଜା ମର୍ଦ୍ଦରାଜଙ୍କ ଅଭିଷେକ । ରାଜା ବୁଝିଗଲେ , ଆଉ ଦିଲ୍ଲୀ ନଯାଇ ସେ ବିଶାଳ ଉତ୍କଳ ଗଠନ ଦିଗରେ ଏହି ତିରିଶି ହଜାର ଟଙ୍କା ବ୍ୟୟ କରିବାକୁ ଦୃଢ଼ଇଚ୍ଛା ପୋଷଣ କଲେ ।

୧୯୦୨ :

ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ଅସାଧାରଣ ସାହିତ୍ୟାନୁରାଗୀ ଥିଲେ । ବିଦ୍ୟାରତ୍ନଙ୍କୁ ପାଇ ସେ ଖଲ୍ଲିକୋଟର ଅନତିଦୂରରେ ରମ୍ଭାଠାରେ ଗୋଟିଏ ପ୍ରେସ୍ ବସାଇଲେ ଓ ତାର ( ମର୍ଦ୍ଦରାଜ ପ୍ରେସ୍ ) ର ଦାୟିତ୍ୱ ବିଦ୍ୟାରତ୍ନଙ୍କୁ ଦେଲେ । ୧୯୦୨ ଜୁନ୍ ୨୫ ତାରିଖ ବୁଧବାର ବିଦ୍ୟାରତ୍ନ ସମ୍ପାଦିତ "ପ୍ରଜାବନ୍ଧୁ" ପତ୍ରିକା ପ୍ରଥମେ ରମ୍ଭା ମର୍ଦ୍ଦରାଜ ପ୍ରେସ୍‌ରୁ ଆତ୍ମ-ପ୍ରକାଶ କଲା ।

ସେତେବେଳକୁ ଗଞ୍ଜାମ ମାନ୍ଦ୍ରାଜ ପ୍ରେସିଡେନ୍‌ସୀ ଅଧୀନରେ ଥିଲା । ତେଣୁ ଦକ୍ଷିଣ-ଉତ୍କଳବାସୀ ତେଲୁଗୁ ଭାଷା ଓ ଲୋକଙ୍କ ପ୍ରାଦୁର୍ଭାବରୁ ମୁକ୍ତିଲାଭ କରି ନ ଥିଲେ । ବ୍ରହ୍ମପୁର କୋର୍ଟ-କଚେରୀରେ ଓଡ଼ିଆ ବଦଳରେ ତେଲୁଗୁ ପ୍ରଚଳିତ ଥିଲା । ଓଡ଼ିଆଭାଷୀ ଏହି ଅଞ୍ଚଳକୁ ଓଡ଼ିଆ ଭାଷା ଓ ସଂସ୍କୃତିକୁ ଲୋପ କରିଦେବା ପାଇଁ ପଡ଼ୋଶୀ ରାଜ୍ୟରୁ ନାନା ଷଡ଼ଯନ୍ତ୍ର ଚାଲୁଥାଏ । ଓଡ଼ିଆ ପିଲାମାନେ ମାତୃଭାଷାରେ ଶିକ୍ଷାଲାଭ କରିବାରୁ ବଞ୍ଚିତ ହେଉଥାଆନ୍ତି । ଏହା ଦେଖି ବିଦ୍ୟାରତ୍ନ ଗଞ୍ଜାମ ଗ୍ରାମାଞ୍ଚଳ ସବୁ ଗସ୍ତ କରି ଗାଁ, ଗାଁରେ "ପ୍ରଜାବନ୍ଧୁ ସମିତି"ମାନ ଗଢ଼ିବାକୁ ଲାଗିଲେ । ଏହି ସମିତିମାନ ଲୋକଙ୍କ ଅଭାବ, ଅସୁବିଧା ଓ ଅଭିଯୋଗକୁ "ପ୍ରଜାବନ୍ଧୁ" ପତ୍ରିକା ଜରିଆରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଲାଗିଲେ । ଗଞ୍ଜାମ ଲୋକ ଦୁଃଖକୁ କପାଳଲିଖନ ବୋଲି ମାନି ଚଳୁଥିଲେ । ପ୍ରଜାବନ୍ଧୁ ସମିତି ଜରିଆରେ ସେମାନେ ଆଖିରୁ ଲୁହ ପୋଛି ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ଗଞ୍ଜାମରେ ନୂତନ ନୂତନ ଜନ ଜାଗରଣ ଆସିଲା ପ୍ରଜାବନ୍ଧୁ ଆନ୍ଦୋଳନ ଜରିଆରେ ବିଚ୍ଛିନ୍ନାଞ୍ଚଳବାସୀଙ୍କୁ ଐକ୍ୟବଦ୍ଧ କରାଇ ବିଦ୍ୟାରତ୍ନ ଉତ୍କଳ ସମ୍ମିଳନୀ ଓ ଓଡ଼ିଶା ରାଜ୍ୟ ଗଠନ ପାଇଁ ଭିତ୍ତିଭୂମି ପକାଇଥିଲେ । ସେତେବେଳ ପର୍ଯ୍ୟନ୍ତ ଓଡ଼ିଆମାନେ ଏକାଠି ହୋଇ ନିଜର ଦାବି ଓ ଅଧିକାର ସାବ୍ୟସ୍ତ କରିବାରେ ସଚେତନ ହେବା ସମ୍ଭବ ହୋଇ ନଥିଲା ବୋଲି ଇଂରେଜ ଶାସକମାନେ ଆଲୋଚନା କରୁଥିଲେ । ଏହି ସବୁ ପରିସ୍ଥିତିକୁ ବିଦ୍ୟାରତ୍ନ ଠିକଣା ଭାବରେ ଅକଳନ କରିବାକୁ ପଛାଇ ନଥିଲେ । ଓଡ଼ିଆ ଭାଷା ବିଲୋପ-ଚକ୍ରାନ୍ତ ଓଡ଼ିଆମାନଙ୍କର ଆଖି ଖୋଲି ଦେଲା । ଆରମ୍ଭ ହେଲା ଗଣ ଆନ୍ଦୋଳନ । ଉତ୍କଳଭୂଇଁର ଅଧିବାସୀମାନେ ଏକଜୁଟ ହୋଇ ମାତିଉଠିଲେ । ଚତୁର୍ଦ୍ଦିଗରେ ଜାଗରଣର ପ୍ରତିଧ୍ୱନି ଝଙ୍କୃତ ହେଲା, ପ୍ରଥମେ ଗଞ୍ଜାମ ଅଞ୍ଚଳରେ ଏହି ପ୍ରତିଧ୍ୱନୀ ଅଗ୍ରଣୀ ହୋଇଥିଲା ।

**୧୯୦୩-୧୯୦୬ :**

୧୯୦୩ ଜାନୁଆରୀ ୯ ତାରିଖ "ଗଞ୍ଜାମ ଜାତୀୟ ସମିତି" ନାମକ ଏକ ସଭାର ଆୟୋଜନ ରାଜା ହରିହର ମର୍ଦ୍ଦରାଜଙ୍କ ସଭାପତିତ୍ୱରେ ରମ୍ଭାଠାରେ ଆୟୋଜନ କରାଯାଇଥିଲା । ସେଦିନ ଜାନୁଆରୀ ୯ ତାରିଖ, ରାଜା ମର୍ଦ୍ଦରାଜଙ୍କ ଶିଶୁପୁତ୍ର : "ରାମଚନ୍ଦ୍ର"ଙ୍କର ତୃତୀୟ ଜନ୍ମନକ୍ଷତ୍ର ଉତ୍ସବ ପାଳନ ଅବସରରେ ନିମନ୍ତ୍ରିତ ଅତିଥିବର୍ଗ ମୟୂରଭଞ୍ଜ ରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ, ମଧୁସୂଦନ ଦାସ, ଫକୀର ମୋହନ ସେନାପତି, ରାଧାନାଥ ରାୟ, ଧରାକୋଟରାଜା ମଦନ ମୋହନ ସିଂହଦେଓ ଏବଂ ମଞ୍ଜୁଷାରାଜା ବାସୁଦେବ ରାଜମଣି ଦେଓଙ୍କୁ ସ୍ୱାଗତ

କରି ପ୍ରାକୃତିକ ଉତ୍କଳର ଏକତ୍ରୀକରଣ ଉଦ୍ଦେଶ୍ୟରେ "ପ୍ରଜାବନ୍ଧୁ" ପତ୍ରିକାର ସମ୍ପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସ୍ୱାଗତ ଭାଷଣ ଦେଇଥିଲେ । ୧୯୦୩ ଏପ୍ରିଲ ମାସରେ ବିଦ୍ୟାରତ୍ନ ବ୍ରହ୍ମପୁରରେ ଏହାର ପରବର୍ତ୍ତୀ ବୈଠକ ଆୟୋଜନ କରିଥିଲେ । ପାରଳାଖେମୁଣ୍ଡିର ଶ୍ୟାମ ସୁନ୍ଦର ରାଜଗୁରୁ ଏହି ବୈଠକରେ ସଭାପତିତ୍ୱ କରିଥିଲେ । ଏହି ଦୁଇଟିଯାକ ସମ୍ମିଳନୀ ଆୟୋଜନ-ପଟରେ ନୀଳମଣି ବିଦ୍ୟାରତ୍ନ ମୁଖ୍ୟଭୂମିକା ନେଇଥିଲେ ଏବଂ ରାଜା ହରିହର ଉଭୟ ସମ୍ମିଳନୀର ପୃଷ୍ଠପୋଷକତା କରିଥିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ନେତୃସ୍ଥାନୀୟ ବ୍ୟକ୍ତିଗଣ ଏହି ସଭାରେ ପ୍ରତିନିଧିତ୍ୱ କରିଥିଲେ । ସେମାନଙ୍କ ମଧ୍ୟରେ କଟକରୁ ବିଶ୍ୱନାଥକର, ମଧୁସୂଦନ ଦାସ, ନନ୍ଦକିଶୋର ବଳ, କୃଷ୍ଣପ୍ରସାଦ ଚୌଧୁରୀ ଓ ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରମୁଖ ପ୍ରତିନିଧିତ୍ୱ କରିଥିଲେ । ଏହି ଅନୁଷ୍ଠାନର ଗ୍ରାମିଣ ସଂପ୍ରସାରିତ ରୂପାୟନ ହେଉଛି ପ୍ରଜାବନ୍ଧୁ ସମିତି । ପରବର୍ତ୍ତୀ ସମୟରେ ତାହା "ଉତ୍କଳ ସମ୍ମିଳନୀ" ରୂପେ ପ୍ରଖ୍ୟାତ ଲାଭ କରିଥିଲା । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ସେହି ବର୍ଷ ଡ଼ିସେମ୍ବର ୩୦ ତାରିଖ ଦିନ କଟକରେ ବସିଥିଲା । ଏଥିପାଇଁ ସାମଗ୍ରିକ ପ୍ରସ୍ତୁତି ଗଞ୍ଜାମ ଓ ଖେମୁଣ୍ଡି ମୂଳକରୁ ଯୋଗାଇ ଦିଆଯାଇଥିଲା ।

ଉତ୍କଳବାସୀଙ୍କ ମୃତବତ୍ ପ୍ରାଣରେ ନୂତନ ଜୀବନର ସଞ୍ଚାର ସୃଷ୍ଟି କରିଥିଲା ବିଦ୍ୟାରତ୍ନଙ୍କ ଦ୍ୱାରା ସଂଗଠିତ ପ୍ରଜାବନ୍ଧୁ ସମିତି । ସତେ ଯେପରି ଏହି ଆନ୍ଦୋଳନାତ୍ମକ ଭାବନା ରୂପାୟିତ ହୋଇଥିଲା ପ୍ରଜାବନ୍ଧୁ ସମିତିର ପ୍ରାନ୍ତୀୟ ସଙ୍ଗୀତ ଭାବରେ, ଗୋଦାବରୀଶ ମହାପାତ୍ରଙ୍କ "ଉଠ କଙ୍କାଳ" କବିତାପରି—

"ବେଳ ନାହିଁ, ବେଳ ନାହିଁ, କଙ୍କାଳ ଟେକ ଚଞ୍ଚଳ ମଥା ।
ବିଦାରି ଉପଲ ନର୍ମଳ ତବ ପଞ୍ଜରୁ ଉଠୁ ବ୍ୟଥା ॥"

ପ୍ରଜାବନ୍ଧୁ ପତ୍ରିକାର ସମ୍ପାଦନା କରୁଥିବା ବେଳେ ବିଦ୍ୟାରତ୍ନ ସଂସ୍କାରକ ନାମରେ ଅନ୍ୟ ଏକ ପତ୍ରିକା ଓ ଉତ୍କଳ ମଧୁପ ନାମରେ ମାସିକ ପତ୍ରିକା ମଧ୍ୟ ସମ୍ପାଦନା କରିଥିଲେ । ଏହି ସମୟରେ ଖଣ୍ଡପଡ଼ା ରାଜା : ପଠାଣି ସାମନ୍ତଙ୍କ "ସଂସ୍କୃତ ସିଦ୍ଧାନ୍ତ ଦର୍ପଣ" ମହାକାରଗତିକ ଶାସ୍ତ୍ରକୁ ପ୍ରଜାବନ୍ଧୁରେ ସନ୍ନିବେଶିତ କରି ତାର ଓଡ଼ିଆ ଭାଷାନ୍ତର କାର୍ଯ୍ୟରେ ବିଦ୍ୟାରତ୍ନ ବ୍ରତୀ ହୋଇଥିଲେ । ସେ ପଠାଣି ସାମନ୍ତଙ୍କୁ ପରିଣତ ବୟସର ଦାରୁଣ ଅର୍ଥସଙ୍କଟରୁ ରକ୍ଷା କରିଥିଲେ । ସେଥିପାଇଁ ପଠାଣି ସାମନ୍ତେ ସର୍ବଦା ନୀଳମଣି ବିଦ୍ୟାରତ୍ନଙ୍କୁ ସ୍ମରଣ କରୁଥିଲେ ।

ଗ୍ରାମୀଣ ପ୍ରଜାବନ୍ଧୁ ସମିତିର ବୈଶିଷ୍ଟ୍ୟ ହେଲା—ଏହା ଉତ୍କଳୀୟ ଜାତୀୟ ରଙ୍ଗ ମଞ୍ଚରେ ରାଜା ଓ ପ୍ରଜା, ଅଭିଜାତ ଓ ସର୍ବସାଧାରଣ ଏବଂ ଆରଣ୍ଡାଳ—

ବ୍ରାହ୍ମଣ, ଏକାଠି ହୋଇ ଜାଂତୀୟ ସ୍ୱାର୍ଥ ସାଧନ ପାଇଁ ଅଂଶ ଗ୍ରହଣ କରୁଥିଲେ । ଏହି ପତ୍ରିକା ଜରିଆରେ ଉତ୍କଳ ସମ୍ମିଳନୀର ଗଠନ ବାର୍ତ୍ତାକୁ ନୀଳମଣି ବିଦ୍ୟାରତ୍ନ ଉତ୍କଳବାସୀଙ୍କୁ ଜଣାଇ ଗାଁ ଗହଳରେ ଶାଖା ଅନୁଷ୍ଠାନଗୁଡ଼ିକୁ ସକ୍ରିୟ କରିବାକୁ ଲାଗିଲେ । "ପ୍ରଜାବନ୍ଧୁ" ପତ୍ରିକାର ଏହି ରାଜନୈତିକ ଭୂମିକାରେ ବ୍ରିଟିଶ ଶାସକ ସନ୍ଦେହ କଲେ । ହଠାତ୍ ଏକ ଷଡ଼ଯନ୍ତ୍ରରେ "ପ୍ରଜାବନ୍ଧୁ ଆନ୍ଦୋଳନ"କୁ ବନ୍ଦ କରି ଦିଆଗଲା । ପତ୍ରିକା ପ୍ରକାଶନକୁ ମଧ୍ୟ ବନ୍ଦ କରିଦିଆଗଲା । ଖଲ୍ଲିକୋଟରେ ସ୍କୁଲ, ବ୍ରହ୍ମପୁରରେ ଖଲ୍ଲିକୋଟ କଲେଜ ଓ ଛାତ୍ରାବାସ ଆଦି ବହୁ ଜନକଲ୍ୟାଣ କାର୍ଯ୍ୟରେ ରାଜା ଅକୁଣ୍ଠିତ ଖର୍ଚ୍ଚ କରି କରି ଋଣଗ୍ରସ୍ତ ହୋଇ ପଡ଼ିଥିଲେ । ରାଜାଙ୍କର ଋଣଭାର ଅତ୍ୟଧିକ ହୋଇପଡ଼ିବାରୁ ତାହାକୁ ଆଉ ପରିଶୋଧ କରିଯାଇ ପାରିଲା ନାହିଁ । ଶେଷରେ ଖଲ୍ଲିକୋଟ-ଜମିଦାରୀକୁ ତୁରନ୍ତ ବ୍ରିଟିଶ ସରକାର ହାତକୁ ନେଇଗଲେ । କମ୍ପାନୀ ତରଫରୁ ଜଣେ ନୂଆ-ମ୍ୟାନେଜର ଜମିଦାରୀ ବୁଝିବାକୁ ନିଯୁକ୍ତ ହେଲେ । ଉକ୍ତ ପ୍ରେସରୁ କିଛି ଆୟ ନ ହେବା ଦେଖି ଏହି ମ୍ୟାନେଜର ପ୍ରେସ୍‌ଟିକୁ ବନ୍ଦ କରି ଦେଲେ; ଫଳରେ ବିଦ୍ୟାରତ୍ନଙ୍କ ଚାକିରୀ ଛୁଟି ହୋଇଗଲା ଓ ସେ ବ୍ରହ୍ମପୁରକୁ ଚାଲି ଆସିଲେ ।

୧୯୦୭

ଗଞ୍ଜାମର ଆଉ ଏକ ପ୍ରସିଦ୍ଧ ଜମିଦାରୀ —ବଡ଼ଖେମୁଣ୍ଡି ବର୍ତ୍ତମାନ "ଦିଗପହଣ୍ଡି" ନାମରେ ଖ୍ୟାତ । ରାଜା କୃପାମୟ ଦେବ ବଡ଼ଖେମୁଣ୍ଡିର ରାଜା ଥିଲେ । ସେ ମଧ୍ୟ ଖୁବ୍ ସାହିତ୍ୟାନୁରାଗୀ ଥିଲେ । ତାଙ୍କ ରାଜସଭାର ପଣ୍ଡିତମାନେ "ନବଗ୍ରହ" ନାମରେ ସୁବିଦିତ ଥିଲେ । ରାଜା କୃପାମୟଙ୍କର ଗୋଟିଏ ପ୍ରେସ (ଗଜପତି ଶ୍ରୀମଦେବ ପ୍ରେସ) ଥିଲା ଓ "ଗଞ୍ଜାମ ଗୁଣ ଦର୍ପଣ" ନାମରେ ପତ୍ରିକାଟିଏ ବାହାରୁଥିଲା । ପରିଚାଳନାଗତ କାରଣରୁ ଏହି ପତ୍ରିକା ନିୟମିତ ବାହାରି ପାରୁନଥିଲା । ଏପରି ଏକ ଦୋଦୁଲ୍ୟମାନ ଅବସ୍ଥାରେ ନୀଳମଣି ବିଦ୍ୟାରତ୍ନ ସେଠାରେ ପହଞ୍ଚିବାରୁ ରାଜା କୃପାମୟ ତାଙ୍କୁ ପାଇ ଆନନ୍ଦିତ ହେଲେ ଏବଂ ବିଦ୍ୟାରତ୍ନଙ୍କୁ ସେ ପ୍ରେସ ପରିଚାଳନା ଦାୟିତ୍ୱ ସମର୍ପି ଉକ୍ତ ପତ୍ରିକାର ନିୟମିତ ପ୍ରକାଶନର ବ୍ୟବସ୍ଥା କରିଦେଲେ ।

ବିଦ୍ୟାରତ୍ନଙ୍କ ବଳିଷ୍ଠ ସମ୍ପାଦନାରେ "ଗଞ୍ଜାମ ଗୁଣ ଦର୍ପଣ" ପତ୍ରିକା ଦିନକୁ ଦିନ ଆହୁରି ସରସ, ସୁନ୍ଦର ହୋଇଉଠିଲା । ଖୁବ୍ ଅଳ୍ପଦିନ ଭିତରେ ଏହି ପତ୍ରିକାର ଜନପ୍ରିୟତାରେ ରାଜା କୃପାମୟ ସମ୍ପାଦକ ବିଦ୍ୟାରତ୍ନଙ୍କୁ ଖୁବ୍ ଆଦର ଯତ୍ନ କଲେ । ସପରିବାରରେ ସେ ବଡ଼ଖେମୁଣ୍ଡିଗଡ଼ରେ ଦୀର୍ଘ ଷୋଳବର୍ଷ କାଳ କଟାଇଥିଲେ । ବଡ଼ଖେମୁଣ୍ଡି ଅବସ୍ଥାନ କାଳରେ ବିଦ୍ୟାରତ୍ନଙ୍କ ସ୍ତ୍ରୀ ବିୟୋଗ

ଘଟିଥିଲା । ସେତେବେଳକୁ ତାଙ୍କର ଦୁଇ ପୁଅ ଥାଆନ୍ତି । ବହୁପୂର୍ବରୁ ବାମଣ୍ଡାରାଜା ସୁଢ଼ଳ ଦେବ ଓ ବଡ଼ଖେମୁଣ୍ଡି ରାଜା କୃପାମୟ ଦେବଙ୍କ ମଧ୍ୟରେ ମତାନ୍ତର ଥିଲା । ଏହି ମତାନ୍ତର କ୍ରମଶଃ ତୀବ୍ର ଆକାର ଧାରଣ କରି କୋର୍ଟ-କଚେରୀ ପର୍ଯ୍ୟନ୍ତ ଯାଇଥିଲା । ବିଦ୍ୟାରତ୍ନ ତ ବାମଣ୍ଡାରେ ଥିଲେ ଏବଂ ମଝିରେ ମଝିରେ ବାମଣ୍ଡା ଦରବାର ନିମନ୍ତ୍ରଣ କ୍ରମେ ବଡ଼ଖେମୁଣ୍ଡିରୁ ବାମଣ୍ଡା ଆସୁଥିଲେ । ଏହାର ସୁଯୋଗ ହଣ୍ଡି କେତେକ ଲୋକ ବୁଝାଇଲେକେ କୃପାମୟ ଦେବଙ୍କୁ ଅନେକ କଥା କହିଲେ; ରାଜା ବିଦ୍ୟାରତ୍ନଙ୍କୁ ସନ୍ଦେହ କରିବା ସ୍ୱାଭାବିକ ହେଲା । ଏହା ଜାଣିପାରି ଭବିଷ୍ୟତରେ ଆଉ କ'ଣ ଅଘଟଣ ଘଟିପାରେ ବୋଲି ବିଦ୍ୟାରତ୍ନ ସପରିବାରେ ବଡ଼ଖେମୁଣ୍ଡି ଛାଡ଼ି ବ୍ରହ୍ମପୁରକୁ ଆସି ସ୍ୱନାମଧନ୍ୟ ଆଡ଼ଭୋକେଟ୍ ଏ. ପର୍ଶୁରାମ ପାତ୍ରଙ୍କ ପାଖରେ ଆଶ୍ରୟ ନେଲେ । ଭୁଲ ବୁଝାମଣା ଅବଶ୍ୟ ସବୁଦିନେ ରହେ ନାହିଁ । ବିଦ୍ୟାରତ୍ନଙ୍କ ବଡ଼ଖେମୁଣ୍ଡି ଛାଡ଼ିଲା ପରେ ରାଜା କୃପାମୟ ତାଙ୍କ ଭୁଲ ବୁଝିପାରିଲେ ଏବଂ ବିଦ୍ୟାରତ୍ନଙ୍କୁ ଡକାଇ ପ୍ରେସ ପରିଚାଳନା ଓ ପତ୍ରିକା ପ୍ରକାଶନ ଦାୟିତ୍ୱ ଦେଇଥିଲେ ।

ଏହି ସମୟରେ ସୁରଙ୍ଗି ରାଜ୍ୟ ଓ ବଡ଼ଖେମୁଣ୍ଡି ରାଜ୍ୟର ସୀମା ବିବାଦକୁ ବିଦ୍ୟାରତ୍ନ ନିଜର ବିଚକ୍ଷଣ ବୁଦ୍ଧିମତାରେ ଦୁଇ ରାଜ୍ୟର ସୀମାବିବାଦକୁ ଶାନ୍ତିପୂର୍ଣ୍ଣ ଭାବରେ ତୁଟାଇ, ଦୁଇରାଜାଙ୍କ ମଧ୍ୟରେ ବନ୍ଧୁତ୍ୱ ସ୍ଥାପନ କରାଇଥିଲେ ଏବଂ ଏତାଦୃଶୀ ମହାନୁଭବତା ପାଇଁ ରାଜା କୃପାମୟଙ୍କ ଉପରେ "ପ୍ରତିଭା ବିନୋଦନ" ଗ୍ରନ୍ଥ ଲେଖି ବିଦ୍ୟାରତ୍ନ ଯଶସ୍ୱୀ ହୋଇଥିଲେ ।

ଦୀର୍ଘ ଷୋଳ ବର୍ଷ କାଳ ବିଦ୍ୟାରତ୍ନ ବଡ଼ଖେମୁଣ୍ଡିରେ ଅବସ୍ଥାନ କରିବା ଭିତରେ, ରାଜା କୃପାମୟ ଦେବଙ୍କୁ କହି ପ୍ରଥମେ ବିଦ୍ୟାଳୟ, ହଷ୍ଟେଲ ଓ ପରେ ବାଳିକା ବିଦ୍ୟାଳୟ, ଲାଇବ୍ରେରୀ ସ୍ଥାପନ କରାଇଥିଲେ । କଲେଜ-ଛାତ୍ରଙ୍କ ରହିବା ପାଇଁ ସେ ବ୍ରହ୍ମପୁରରେ ଛାତ୍ରାବାସ ନିର୍ମାଣ କରାଇଥିଲେ । ଏଥିପାଇଁ ଆବଶ୍ୟକୀୟ ଅର୍ଥ ସଂଗ୍ରହ କରି ସେ ବହୁ ମେଧାବୀ ଛାତ୍ରଙ୍କୁ ଆର୍ଥିକ ସହାୟତା ପ୍ରଦାନ କରିଥିଲେ ।

ବାମଣ୍ଡା ମଣ୍ଡଳରେ ବଡ଼ଖେମୁଣ୍ଡି ଗଡ଼କୁ ଉନ୍ନୀତ କରିବାକୁ ବିଦ୍ୟାରତ୍ନଙ୍କର ଚିନ୍ତା ଚେତନା ଥିଲା । ବିଭିନ୍ନ ଗଠନମୂଳକ କାମରେ ସେ ପୁରୀ ଓ ବ୍ରହ୍ମପୁରରେ ଅବସ୍ଥାନ କରି ଛାତ୍ରାବାସ, ଜଗନ୍ନିବାସ ଓ ଆଶ୍ରମ ନିର୍ମାଣ ଆଦି କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ବିଦ୍ୟାରତ୍ନଙ୍କ ବଡ଼ଖେମୁଣ୍ଡି ଅବସ୍ଥାନ ପୂର୍ବରୁ, ରାଜା କୃପାମୟ ଦେବଙ୍କ ବଡ଼ଭାଇ ମଦନ ମୋହନ ଦେବ ପୁରୀଗଜପତି ମହାରାଜାଙ୍କ ପୋଷ୍ୟ ପୁତ୍ର ହୋଇ

ଦ୍ୱିତୀୟ-ଦିବ୍ୟସିଂହ ଦେବ ଗଜପତି ନାମରେ ଖ୍ୟାତ ହୋଇଥିଲେ । ଦିବ୍ୟସିଂହ ଦେବଙ୍କ ସମୟରେ ପୁଣି ଜଗନ୍ନାଥ ମନ୍ଦିରରୁ ପଥର ଖସିଥିଲା । ତାର ତୁରନ୍ତ ମରାମତି ଓ ନିର୍ମାଣ ଖର୍ଚ୍ଚ ରାଜା ବହନ କଲେ । ଏହି ପର୍ଯ୍ୟାପ୍ତ ଖର୍ଚ୍ଚ କରିବାକୁ ରାଜକୋଷରେ ପଇସା ନ ଥିବାରୁ ଏହି ଖର୍ଚ୍ଚ ଭରଣା ପାଇଁ ଯାତ୍ରୀକର ବସାଇବାକୁ ସ୍ଥିରକଲେ । ମାତ୍ର ମନ୍ଦିର ପୂଜକ ଓ ପଣ୍ଡାମାନେ ଏହାକୁ ବିରୋଧ କରି ଗଜପତିଙ୍କ ବିରୋଧରେ ମକଦ୍ଦମା କଲେ । ବ୍ରିଟିଶ ଶାସକ ଏହାକୁ ସୁହିଁ ବସିଥିଲେ । କୋର୍ଟରେ ବିଚାର ହେଲା ଓ ଗଜପତି ଦ୍ୱିତୀୟ-ଦିବ୍ୟସିଂହ ଦେବଙ୍କୁ ଆଣ୍ଡାମାନ ନିକୋବର ଦ୍ୱୀପକୁ ଆଜୀବନ ନିର୍ବାସନ ଦଣ୍ଡ ମିଳିଲା । ଏପରି ମହନୀୟ ଓଡ଼ିଆ ଜାତିର "ଚଳନ୍ତି ବିଷ୍ଣୁ"ଙ୍କ ସନ୍ଦିଗ୍ଧ ପରିବାରବର୍ଗଙ୍କୁ ନୀଳମଣି ବିଦ୍ୟାରତ୍ନ ସାକ୍ଷାତ୍ କରିବାକୁ ପୁଣି ଆସି କୃପାମୟ ଦେବଙ୍କ ସୌଜନ୍ୟ ଓ କର୍ତ୍ତବ୍ୟବୋଧ ପାଳନ କରିଥିଲେ । ଜଗନ୍ନାଥ ମନ୍ଦିର ପରିଚାଳନା କେଶ୍-ମାମଲାରେ ବିଦ୍ୟାରତ୍ନେ ମଧୁସୂଦନ ଦାସଙ୍କୁ ସକ୍ରିୟ ସହଯୋଗ କରିଥିଲେ ।

କୃପାମୟ ଦେବଙ୍କ ରାଜସଭା "ନବରତ୍ନ" ପଣ୍ଡିତବର୍ଗଙ୍କୁ ବିଦ୍ୟାରତ୍ନ ଫକୀର ମୋହନ ସେନାପତିଙ୍କ ସହିତ ସମ୍ପର୍କିତ କରିବା ଆଳରେ ଫକୀର ମୋହନଙ୍କ ବଡ଼ଖେମୁଣ୍ଡି ରାଜ୍ୟ କର୍ମକୁ ବିଦ୍ୟାରତ୍ନ ନିର୍ଣ୍ଣୟ କରିଥିଲେ । ଘଟଣା ଏହିକି, ସେ ସମୟରେ ବଡ଼ଖେମୁଣ୍ଡି ଓ ଚିକିଟି ରାଜାଙ୍କ ମଧ୍ୟରେ କୌଣସି କାରଣରୁ ତିକ୍ତ ସଂପର୍କ ହୋଇ ପଡ଼ିଥିଲା । ଇତ୍ୟବସରେ ବଡ଼ଖେମୁଣ୍ଡି ସିରସ୍ତାଦାର ରାମଚନ୍ଦ୍ର ପଟ୍ଟନାୟକ ଚିକିଟିଗଡ଼ର କନ୍ୟା ତଥା ନାରୀକବି ଅନ୍ନପୂର୍ଣ୍ଣା ପଟ୍ଟନାୟକଙ୍କୁ ବିବାହ କରିଥିଲେ । ଖେମୁଣ୍ଡି ସାରସ୍ୱତ ସଭାର ସାନ୍ନିଧ୍ୟ ଲାଭାର୍ଥେ ଖେମୁଣ୍ଡି କୁଳବଧୂ ହୋଇ ନାରୀକବି ଅନ୍ନପୂର୍ଣ୍ଣା ନିଜକୁ ଅସୀମ ଭାଗ୍ୟବତୀ ମନେ କରିଥିଲେ । କ୍ରମଶଃ ରାଜନ୍ୟଦ୍ୱୟଙ୍କ ମଧ୍ୟରେ ତୁମୁଳ ଅନ୍ତର୍ବିବାଦ ଘନୀଭୂତ ହେବାରୁ ସିରସ୍ତାଦାର ରାମଚନ୍ଦ୍ର ପଟ୍ଟନାୟକଙ୍କ ଚାକିରୀ ବଡ଼ଖେମୁଣ୍ଡିରୁ ବରଖାସ୍ତ ହୋଇଥିଲା । ଫକୀର ମୋହନଙ୍କ ଆଗମନ ଓ ପ୍ରଚେଷ୍ଟା ସତ୍ତ୍ୱେ ରାମଚନ୍ଦ୍ର ପଟ୍ଟନାୟକଙ୍କ ପୁନଃନିଯୁକ୍ତି ସଂଭବ ହେଲା ନାହିଁ । ବରଂ ରାଜା ସେହି ଦମ୍ପତ୍ତିଙ୍କୁ ବଡ଼ଖେମୁଣ୍ଡିଗଡ଼ ଛାଡ଼ିବାକୁ ନିର୍ଦ୍ଦେଶ ଦେଲେ । ଠିକ୍ ଏହି ମୁହୂର୍ତ୍ତରେ ଫକୀର ମୋହନ ନାରୀକବି ଅନ୍ନପୂର୍ଣ୍ଣାଙ୍କ ସହିତ ଏକ "ସାରସ୍ୱତ ସାକ୍ଷାତ୍‌କାର" ଦେଇ ଭାରତର ଇଂରାଜୀ ଖବରକାଗଜ, ଦପ୍ତର ଜର୍ଣ୍ଣାଲ, ଏପରିକି ବିଲାତର "ଟାଇମସ୍" ଓ "ଟେଲିଗ୍ରାଫ" କାଗଜରେ ପ୍ରକାଶ କଲେ; କିନ୍ତୁ ତାହା ନାରୀକବିଙ୍କୁ ବଡ଼ଖେମୁଣ୍ଡିରେ ରହିବାକୁ ସହାୟକ ହୋଇପାରି ନ ଥିଲା । ବୃଦ୍ଧକବି ଫକୀର ମୋହନଙ୍କ "ଭାବୋଦ୍‌ରେଚିତ ସାକ୍ଷାତ୍‌କାର"ରେ ମୁଗ୍ଧ ହୋଇ

ବିଦ୍ୟାରତ୍ନ ତାଙ୍କୁ ବାମଣ୍ଡା ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ଦରବାରରୁ "ସରସ୍ୱତୀ" ଉପାଧିରେ ଭୂଷିତ କରାଇଥିଲେ ।

ପୁରୀ ଗଜପତି ମହାରାଜାଙ୍କ ପରିବାରବର୍ଗଙ୍କ ଅନୁବର୍ତ୍ତୀ ହୋଇ ନୀଳମଣି ବିଦ୍ୟାରତ୍ନ ପୁରୁଷୋତ୍ତମ କ୍ଷେତ୍ର, ପୁରୀ ଆଡ଼କୁ ବେଶି ଆକର୍ଷିତ ହୋଇଥିଲେ । ପୁରୀକୁ ଅନେକ ଧର୍ମପ୍ରାଣା-ବିଧବା ସେମାନଙ୍କ ଅନ୍ତିମ-ଆଶ୍ରୟ-ସ୍ଥଳୀ ବୋଲି ବିବେଚନା କରିଥାନ୍ତି । କିନ୍ତୁ ସେଠାରେ ସେମାନେ ନାନାଦି ଦୁଃଖ ଓ ଯାତନା ଭିତରେ କାଳ କଟାଇ ଥାଆନ୍ତି । ସେମାନଙ୍କ ରହିବାପାଇଁ ନିର୍ଦ୍ଦିଷ୍ଟ ଜାଗା ନ ଥାଏ । ଖାଇବା, ପିଇବାରେ ମଧ୍ୟ ଠିକଣା ନ ଥାଏ । ଯୁବାବୟସରେ ସ୍ୱାମୀ ହରାଇ ସେମାନେ ପୁରୀରେ ଏପରି ଦୟନୀୟ ଜୀବନ ବିତାଇବା ଦେଖି ନୀଳମଣି ବିଦ୍ୟାରତ୍ନ ଆଉ ସହ୍ୟ କରି ପାରିଲେ ନାହିଁ । ସେମାନଙ୍କ ଥଇଥାନ ପାଇଁ "ବିଧବାଶ୍ରମ"ଟିଏ ପ୍ରତିଷ୍ଠା କରିବାକୁ ବିଦ୍ୟାରତ୍ନ ଚିନ୍ତା ପ୍ରକଟ କଲେ । ପୁରୀ ମଠର ପରିଚାଳକ ରାଜକିଶୋର ଦାସଙ୍କ ସମୀପସ୍ଥ ହୋଇ ବିଦ୍ୟାରତ୍ନ "ବିଧବାଶ୍ରମ" ନିର୍ମାଣ ପାଇଁ ତାଙ୍କୁ ଉତ୍ସାହିତ କଲେ । ଶ୍ରୀବତ୍ସ ପଣ୍ଡା ଓ ମୟୂରଭଞ୍ଜ ରାଜା ରାମଚନ୍ଦ୍ର ଭଞ୍ଜଦେଓଙ୍କଠାରୁ ଆର୍ଥିକ ସାହାଯ୍ୟ ନେଇ ପୁରୀରେ ବିଧବାଶ୍ରମ ପ୍ରତିଷ୍ଠା କରିଥିଲେ ।

ବିଧବାଙ୍କ ସମସ୍ୟା କିପରି ଦୂର ହେବ ଏଥିପାଇଁ ବିଦ୍ୟାରତ୍ନ ଲାଗି ପଡ଼ିଥିଲେ । ଆମ ଦେଶରେ ସେତେବେଳେ ବାଲ୍ୟ ବିବାହ ପ୍ରଥାନୁସାରେ, ଝିଅଙ୍କୁ ମାତ୍ର ୫/୭ ବର୍ଷ ବୟସ ହେଲେ ତାଙ୍କୁ ୪୦/୪୫ ବର୍ଷ ବୟସର ବୁଢ଼ାମାନଙ୍କ ସହିତ ବିବାହ କରାଯାଉଥିଲା । ଫଳରେ ଝିଅମାନଙ୍କୁ ୧୫।୧୬ ବର୍ଷ ବୟସ ହେଲାବେଳକୁ ସେମାନଙ୍କ ବରମାନେ ମୃତ୍ୟୁବରଣ କରୁଥିଲେ । ତା'ପରେ ସେମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ ହେଉଥିଲା । ସମାଜରେ ସେମାନଙ୍କର ମୁହଁ କେହି ଚାହୁଁ ନଥିଲେ । ନାନାଦି ଗାଳି ଲାଞ୍ଛନାରେ ଶିକାର ହୋଇ ଶେଷକୁ ସେମାନେ ଅପମୃତ୍ୟୁର ଅଧୀନ ହେଉଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ଏ ସବୁ ଦୃଶ୍ୟ ଦେଖି ବିଦ୍ୟାରତ୍ନ ବହୁତ କଷ୍ଟ ପାଇଲେ । ପ୍ରଥମେ ସେ ବାଲ୍ୟ-ବିବାହକୁ ବିରୋଧ କଲେ । ତାଙ୍କ ସଂପାଦିତ ପତ୍ରିକା ଓ ଗ୍ରାମ-ସଭାରେ ଏହି ପ୍ରଥାର କୁପରିଣାମ ଓ ସମସ୍ୟା ସଂପର୍କରେ ବୁଝାଇ ତରୁଣୀ-ବିଧବାମାନଙ୍କୁ ପୁନଃବିବାହ କରାଇଲେ । ଏହି କାର୍ଯ୍ୟକରି ସେ ପ୍ରତିଷ୍ଠିତ ଓ ରକ୍ଷଣଶୀଳ ବ୍ୟକ୍ତିମାନଙ୍କ ଆକ୍ରମଣର ଶିକାର ହୋଇଥିଲେ । ତଥାପି ସେ କୌଣସି ରୂପରେ ମୁଣ୍ଡ ନ ନୁଆଁଇ ବିଧବା-ବିବାହ ଉପଲକ୍ଷେ ଅକୁଣ୍ଠିତ ସାହାଯ୍ୟ, ସହଯୋଗ କରୁଥିଲେ ।

୧୯୨୨ ମସିହାରେ ବଡ଼ଖେମୁଣ୍ଡି ରାଜା କୃପାମୟ ଦେବଙ୍କ ଦେହାନ୍ତ ପରେ, କମ୍ପାନୀ-ସରକାର ବଡ଼-ଖେମୁଣ୍ଡି ଜମିଦାରୀକୁ ହାତକୁ ନେଇଗଲେ । 'ରମ୍ଭା ମର୍ଦ୍ଦରାଜ ପ୍ରେସ'ର ଅବସ୍ଥାପରି 'ଗଜପତି ଶ୍ରୀମଦେବ ପ୍ରେସ'ର ଅବସ୍ଥା ହୋଇଗଲା । ନିରୁପାୟ ହୋଇ ନୀଳମଣି ବିଦ୍ୟାରତ୍ନ ବଡ଼ଖେମୁଣ୍ଡି ପରିତ୍ୟାଗ କରି କଟକ ଆସିଲେ ।

ସେତେବେଳକୁ ଓଡ଼ିଆ ଭାଷୀ ବିଚ୍ଛିନ୍ନ ଅଞ୍ଚଳକୁ ଏକତ୍ରୀକରଣ ପାଇଁ "ଉତ୍କଳ-ସମ୍ମିଳନୀ" ଏକମାତ୍ର ଜାତୀୟ ଅନୁଷ୍ଠାନ ରୂପେ ପରିଗଣିତ ହେଉଥିଲା । କର୍ମବୀର ଗୌରୀ ଶଙ୍କର ରାୟଙ୍କ ସଂପାଦନାରେ ବଳିଷ୍ଠ "ଉତ୍କଳ ଦୀପିକା" ଏ ଦିଗରେ ଅଗ୍ରଣୀ ଭୂମିକା ନେଇଥିଲା । ଓଡ଼ିଆଜାତିର ସ୍ୱାଭିମାନ ଓ ମର୍ଯ୍ୟାଦା ରକ୍ଷା କରିବା ଦିଗରେ କର୍ମବୀର ଗୌରୀଶଙ୍କର ସମଗ୍ର ଉତ୍କଳରେ ଅଗ୍ରଗଣ୍ୟ ବ୍ୟକ୍ତି ଥିଲେ । ତାଙ୍କ ଏକନିଷ୍ଠ ପ୍ରଯତ୍ନରେ ଓଡ଼ିଆଲୋକ ଓ ଭାଷା ସାହିତ୍ୟର ଯୁଗାନ୍ତକାରୀ ଉନ୍ନତିସାଧନ ସମ୍ଭବ ହେଉଥାଏ । ଠିକ୍ ଏତିକବେଳେ ଗୌରୀ ଶଙ୍କରଙ୍କ ଦେହାନ୍ତ ଘଟିଥିଲା । ଏତଦ୍ଦ୍ୱାରା ଓଡ଼ିଆଜାତି ଓ ଭାଷା-ଆନ୍ଦୋଳନର ଜୁଆରରେ ଟିକେ ଭଟ୍ଟା ପଡ଼ିଗଲା । "ଉତ୍କଳ ଦୀପିକା"ର ସମ୍ପାଦନା ପାଇଁ ସୁଯୋଗ୍ୟ ଦାୟିତ୍ୱ-ସମ୍ପାଦକଙ୍କୁ ଖୋଜା ପଡ଼ିଲା । ଏଥିପାଇଁ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କୁ ମନୋନୀତ କରାଗଲା । "ଉତ୍କଳ ଦୀପିକା"ରେ ଶିଳ୍ପ, ବାଣିଜ୍ୟ, କୃଷି ଓ ବୈଷୟିକ ଦିଗରେ ଜନଗଣଙ୍କୁ ଅବହିତ କରାଗଲା ।

ଦିଗପହଣ୍ଡି ଅବସ୍ଥାନ କାଳରେ ତାଙ୍କଦ୍ୱାରା ପ୍ରକାଶିତ ମାସିକ ପତ୍ରିକା "ଉତ୍କଳ ମଧୁପ" ମଧ୍ୟ ବାହାରୁଥିଲା । ବାମଣ୍ଡା ଅବସ୍ଥାନ କାଳରେ ପ୍ରଥମେ ଏହି ପତ୍ରିକା ବାହାରୁଥିଲା ।

କଟକରେ ସେ ପୀଡ଼ିତ ହୋଇ ତା ୨୭ । ୭ । ୧୯୨୩ ଇଖରେ ମୃତ୍ୟୁବରଣ କରିଥିଲେ ।

ପଣ୍ଡିତ ନୀଳମଣି ବିଦ୍ୟାରତ୍ନ (୧୮୭୭-୧୯୨୩) ଜୀବନୀ-ଚରିତ ଉପରେ ଆଲୋକପାତ କଲେ ଆମେ ଦେଖିବାକୁ ପାଇବା ଯେ ସେ ଆଜୀବନ ସାହିତ୍ୟ, ଶିକ୍ଷା ଓ ସାମ୍ବାଦିକତା ଏବଂ ସମାଜ ସେବା କ୍ଷେତ୍ରରେ ସାଲିସବିହୀନ ଓ ଅପ୍ରତିଦ୍ୱନ୍ଦ୍ୱୀ ପଦକ୍ଷେପମାନ ଗ୍ରହଣ କରିଥିଲେ । ସାମ୍ବାଦିକତା କ୍ଷେତ୍ରରେ ସେ ବହୁ ପ୍ରତିଷ୍ଠିତ ବ୍ୟକ୍ତିବିଶେଷଙ୍କ କ୍ରୋଧର ଶିକାର ହୋଇଥିଲେ । ତଦ୍ଦ୍ୱାରା ସେ ବହୁତ କ୍ଷତିଗ୍ରସ୍ତ ହୋଇଥିଲେ ମଧ୍ୟ ନିଜ ସେବାମାର୍ଗରେ ସେ ସର୍ବଦା ଅଟଳ ଓ ଅବିଚଳ ରହୁଥିଲେ । ତାଙ୍କର ଅସାଧାରଣ ସାମ୍ବାଦିକ ଓ ସାରସ୍ୱତ ପାରଦର୍ଶିତା ଯୋଗୁ ସେ ବହୁ ପ୍ରତିଷ୍ଠିତ ସ୍ୱୀକୃତି ଓ ପଦ-ମର୍ଯ୍ୟାଦା ପାଇଥିଲେ, ମାତ୍ର

ସାମାନ୍ୟ ମତାନ୍ତର ଘଟିଲେ ସେ ତୁରନ୍ତ ସମସ୍ତ ପଦମର୍ଯ୍ୟାଦା ତ୍ୟାଗ କରି ସେ ସ୍ଥାନରୁ ଚାଲି ଆସୁଥିଲେ । କାରଣ ଉତ୍କଳୀୟମାନଙ୍କ ଦୁଃଖ ଦୁର୍ଦ୍ଦଶା ଓ ତାର ନିରାକରଣ ପାଇଁ ସେ ସର୍ବଦା ଜାଗ୍ରତ ରହୁଥିଲେ । ବିଦ୍ୟାରତ୍ନଙ୍କ ଏତାଦୃଶ ସ୍ୱଦେଶପ୍ରେମ ଅତ୍ୟନ୍ତ ବିରଳ ଓ ବ୍ୟତିକ୍ରମ ଦୃଷ୍ଟାନ୍ତ ।

ପ୍ରଚଳିତ ସମାଜର ଅଶିକ୍ଷା, କୁସଂସ୍କାର, ଅନ୍ଧବିଶ୍ୱାସକୁ ଦୂରକରିବା ଦିଗରେ ଏବଂ ବିଚ୍ଛିନ୍ନ ଓଡ଼ିଆଞ୍ଚଳକୁ ଏକତ୍ରୀକରଣ କରିବା ଦିଗରେ ତାଙ୍କ ଲେଖନୀ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବଦ୍ଧପରିକର ଥିଲା । ଆଉ ଯେଉଁଠି ପ୍ରଥମେ ସେ ନିଜର କର୍ମସ୍ଥଳୀ ବୋଲି ବିବେଚନା କରୁଥିଲେ ସେଠାରେ ପ୍ରଥମେ ସ୍କୁଲ୍ ପ୍ରତିଷ୍ଠା ଓ ଗରିବ ମେଧାବୀ ପିଲାଙ୍କୁ ଆର୍ଥିକ ସହାୟତା କରିବା ଦିଗରେ ଧ୍ୟାନ ଦେଇଥିଲେ ।

ପିଲାଟି ଦିନରୁ ବିଦ୍ୟାରତ୍ନ ଗରିବ ଥିଲେ । ବୋଧହୁଏ ସେହି କଷ୍ଟକର-ଛାତ୍ର ଜୀବନ ପାଇଁ ସେ ସର୍ବଦା ଗରିବ ଓ ମେଧାବୀ ଛାତ୍ରମାନଙ୍କୁ ଆର୍ଥିକ ସହାୟତା ପ୍ରଦାନ କରୁଥିଲେ । ପରିଶେଷରେ ସେ ନିଜେ ଗରିବ ଓ ନିଃସ୍ୱ ହୋଇଥିଲେ ମଧ୍ୟ ସେଇ "ରୁଙ୍ଗ ସେବା"ରୁ ସେ କଦାପି ବିରତ ହୋଇ ନ ଥିଲେ । କୌଣସି ସମୟରେ ସେ ନିଜେ କପର୍ଦ୍ଦକ ଶୂନ୍ୟ ଅବସ୍ଥାରେ ଥିଲେ ମଧ୍ୟ, ଗରିବ ଓ ଆଗନ୍ତୁକ ବିଦ୍ୟାର୍ଥୀ ଉପସ୍ଥିତ ହୁଅନ୍ତେ, ସେ ତତ୍‌କ୍ଷଣାତ୍ ବଡ଼ ବଡ଼ ଧନୀ ଓ ଜମିଦାରମାନଙ୍କୁ ଲୋଡ଼ି ଦରିଦ୍ର ଛାତ୍ର ଓ ଅସହାୟ ଲୋକଙ୍କୁ ସମ୍ଭାଳି ନେଇପାରୁଥିଲେ । ତାଙ୍କୁ ହିଁ ଉତ୍କଳର ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ଓ ନବ ଉତ୍କଳର ସ୍ରଷ୍ଟା ଅନ୍ୟତମ ବୋଲି ଚିହ୍ନଟ କରାଯାଇପାରେ । ତାଙ୍କ ପ୍ରଦତ୍ତ ସହାୟତାରେ ତଦାନୀନ୍ତନ ଅଗଣିତ ଉତ୍କଳୀୟ ବିଦ୍ୟାର୍ଥୀ ରାଷ୍ଟ୍ରୀୟ ଓ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସବୁଦିନ ପାଇଁ ଅମାବାସ୍ୟାର ଅନ୍ଧକାର ମଧ୍ୟରେ ହଜିଗଲେ ! ଏହା କ'ଣ ଉତ୍କଳୀୟମାନଙ୍କ ଭାଗ୍ୟର ବିଡ଼ମ୍ବନା ନୁହେଁ କି ? ତା' ନ ହୋଇଥିଲେ ଓଡ଼ିଆ ସାହିତ୍ୟର ଅମର ବିନ୍ଧାଣି, କାଳଜୟୀ ପୂଜ୍ୟ ଡଃ ମାୟାଧର ମାନସିଂହ ତାଙ୍କର "ଓଡ଼ିଆସାହିତ୍ୟର ଇତିହାସ"ରେ ଲେଖି ନଥାନ୍ତେ ।

"ପ୍ରସ୍ତର ମୂଳକ ଏହି ଯୁଗ, ଆଉ କୃତଘ୍ନ ଏହି ଓଡ଼ିଆ ଜାତିଠାରୁ ଦରିଦ୍ର ବିଦ୍ୟାରତ୍ନେ ଯେ ଉପଯୁକ୍ତ ସମ୍ମାନ ଆଜି ପାଇପାରି ନାହାନ୍ତି, ଏଥିରେ ବିସ୍ମିତ ହେବାର କ'ଣ ଅଛି ?"

ଆମ ଦେଶରେ ଗୋଟିଏ ଶ୍ରେଣୀର ଲୋକେ ଚିର ଦରିଦ୍ର । ସେମାନେ ହେଲେ କବି, ଲେଖକ ଓ ଶିଳ୍ପୀ । ଏହି ଶ୍ରେଣୀୟ ସାରସ୍ୱତ ସ୍ରଷ୍ଟାଙ୍କର ଆମପରି

ବ୍ୟବସାୟିକ ବସ୍ତୁର ଓ ଫନ୍ଦିଫିକରର କିଛି ନାହିଁ । (ମିଛ ସତ, ଜାଲିଆତିକୁ ସେମାନେ ଆଦୌ ପ୍ରଶ୍ରୟ ଦେଉନ୍ତି ନାହିଁ ।) ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ହେଉଛନ୍ତି ଠିକ୍ ସେହି ଗୋଷ୍ଠୀର ଲୋକ । ବୋଧହୁଏ ସେଥିପାଇଁ ସାରସ୍ୱତ-ସ୍ରଷ୍ଟାମାନଙ୍କୁ ବିଦ୍ୟାରତ୍ନ ସର୍ବାନ୍ତକରଣେ ସହାୟତା କରୁଥିଲେ । ପଠାଣି ସାମନ୍ତଙ୍କ ସୁସମ୍ପର୍କିତ ହୋଇ ବିଦ୍ୟାରତ୍ନ ତାଙ୍କ ପାଇଁ ନିଜ ଜୀବନ ଦାନ କରିବାକୁ ପଣ କରିଥିଲେ । "ସାଧକମାନଙ୍କ ସାଧନା ମାର୍ଗକୁ କେବଳ ସାଧକ ମନୋବୃତ୍ତି ସମ୍ପନ୍ନ ଲୋକ ହିଁ ଜାଣିପାରେ ।"—ବୋଲି ବିଦ୍ୟାରତ୍ନ ଦାବି କରୁଥିଲେ । ତେଣୁ ତାଙ୍କୁ "ଉତ୍କଳ ଭାରତୀ"ର ଆଦ୍ୟ ଅଗ୍ର ଓ ପ୍ରଜ୍ଞା ପୁରୁଷ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବ୍ୟକ୍ତିଗତ ଜୀବନ ଚର୍ଯ୍ୟାରେ ବିଦ୍ୟାରତ୍ନ ଥିଲେ ଅତି ସରଳ, ନିରମାଣୀ ଲୋକଟିଏ । ଅତି ସାଧାରଣ ମଣିଷଟିଏ ପରି ସେ ଚଳୁଥିଲେ ଗର୍ବ, ଅହଂକାର ଆଦି ଖରାପ ଗୁଣ ତାଙ୍କଠାରେ ନଥିଲା । ବରଂ ଅଧିକାଂଶ-ପ୍ରଶାସକ ଓ ରାଜନ୍ୟ ବର୍ଗ ଏବଂ ସେମାନଙ୍କ କାନକୁହା-ଖଳ ଲୋକମାନଙ୍କୁ ସେ ଆପଣାର ସେବାମୟ ଉଦାମତା ଓ ବୌଦ୍ଧିକ କୁଶଳତାରେ ଆବଦ୍ଧ କରି ସେମାନଙ୍କୁ ଦେଶ ଓ ଜନ-ସେବାରେ ଉତ୍ତମ ବିନିଯୋଗ କରିପାରୁଥିଲେ । ଏହି ତ୍ୟାଗମୟ ଜାତିପ୍ରାଣ—ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଜୀବନ ଇତିହାସ ସମସାମୟିକ ଦୁନିଆରେ ବିରଳ । (ତାଙ୍କ ପାଇଁ ଓଡ଼ିଶା ରାଜ୍ୟରେ ଦୀପଟିଏ ଜାଳିବାକୁ କେହି ନାହାନ୍ତି; କିନ୍ତୁ ସେ କଲିକତାରେ ଜନ୍ମ ଲାଭ କରିଥିଲେ ସେମାନେ "ବିଦ୍ୟାରତ୍ନ ବିଶ୍ୱ-ବିଦ୍ୟାଳୟ" ପ୍ରତିଷ୍ଠା କରି ଦେଇଥାଆନ୍ତେ !)

ଜୀବନର ଅନ୍ତକାଳରେ ସେ "ଉତ୍କଳ ଦୀପିକା"ର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିବାକୁ ପଶ୍ଚାଦପଦ ହୋଇ ନ ଥିଲେ । ତାଙ୍କ ପାଇଁ ବିଶ୍ରାମ ଜୀବନରେ ଲୋଡ଼ା ହୋଇ ନଥିଲା । ଏହି ଅବିଶ୍ରାନ୍ତ, ଜାତିସ୍ମର ମହାମନା ପଣ୍ଡିତ ନୀଳମଣି ବିଦ୍ୟାରତ୍ନ କଟକରେ ଅସୁସ୍ଥ ହୋଇ ୧୯୨୩ ମସିହା ଜୁଲାଇ ୨୭ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ ।

ଓଡ଼ିଶାର ଏହି ପ୍ରଜ୍ଞା ପୁରୁଷ, ଆଦର୍ଶ ଶିକ୍ଷକ, ସମାଜସେବୀ, ସାମ୍ବାଦିକ, ସମାଜ ସଂସ୍କାରକ ଓ ଅକୁଣ୍ଠିତ ବଦାନ୍ୟ ବ୍ୟକ୍ତି ତଥା "ଉତ୍କଳ-ଭାରତୀ"ର ପଥିକୃତ ଅଥଚ ଅଲୋଡ଼ାସ୍ରଷ୍ଟା ସବୁଦିନ ପାଇଁ ଲୋକଲୋଚନର ଅନ୍ତରାଳକୁ ଚାଲିଗଲେ ! ଧନ୍ୟ ଓଡ଼ିଆ ଜାତି ! ଧନ୍ୟ ଆଜିର ଉତ୍କଳ ଭାରତୀ !!

ଶରତ ଚନ୍ଦ୍ର ବିଶ୍ୱାଳ
ଅରକ୍ଷିତ ମଣ୍ଡପ, ଦିଗପହଣ୍ଡି,
ଗଞ୍ଜାମ-୭୬୧୦୧୨

---

## ନୀଳମଣି ବଦ୍ୟାରତ୍ନ ସ୍ୱର୍ଗତ ଚନ୍ଦ୍ରମୋହନ ମହାରଣାଙ୍କୁ ଲେଖିଥିବା ନମ୍ନଲିଖିତ ୨ଟି ଚିଠି ଶ୍ରୀ ଶରତଚନ୍ଦ୍ର ମହାରଣାଙ୍କଠାରୁ ପ୍ରାପ୍ତ

( ୧ )

ବଡ଼ ଖେମୁଣ୍ଡି, ପୋ ଦଗପହଣ୍ଡି, ଗଞ୍ଜାମ        ୧୯-୫-୧୯୧୫ ମସିହା

ପ୍ରିୟ ମହାଶୟ !

"ଓଡ଼ିଆ ଓ ନବସମ୍ବାଦ"ରୁ ଆପଣଙ୍କର ( ରାସମଣି ଦେବୀ—ବୟସ ୪୧ ବର୍ଷ ) ପତ୍ନୀବିୟୋଗ-ବାର୍ତ୍ତା ଶ୍ରବଣ କର ନରତଶୟ ଦୁଃଖିତ ହୋଇଅଛୁଁ । ବଚ୍ଛେଦଯାତନା ଉପର ଦୁର୍ବିସହ ତାହା ଭୁକ୍ତଭୋଗୀ ବ୍ୟତୀତ ଅନ୍ୟ କେହି ସମ୍ୟକ୍ ଅନୁଭବ କରପାରବେ ନାହିଁ । ମୁଁ ଭୁକ୍ତଭୋଗୀମାନଙ୍କ ମଧ୍ୟରେ ଅନ୍ୟତମ । ପ୍ରବୋଧ-ପ୍ରଦାନ ମାନବୀୟ ଶକ୍ତର ଅତୀତ । ଜଗଦୀଶ୍ୱର ଆପଣଙ୍କର ହୃଦୟରେ ଶାନ୍ତ ପ୍ରଦାନ ଓ ପରଲୋକଗତ ଆତ୍ମାର ସଦ୍‌ଗତ ବଧାନ କରନ୍ତୁ, ଏହି ପ୍ରାର୍ଥନା କରୁଅଛୁ ।

ଆପଣଙ୍କର
ଶ୍ରୀ ନୀଳମଣି ବଦ୍ୟାରତ୍ନ

ଶ୍ରୀ ଚନ୍ଦ୍ରମୋହନ ମହାରଣା, ବ.ଏ.   ସମୀପେଷୁ
ପୋ.ଅ.—ରେମୁଣା,   ଜଲ୍ଲା—ବାଲେଶ୍ୱର

( ୨ )

ବଡ଼ଖେମୁଣ୍ଡି, ପୋ ଦଗପହଣ୍ଡି, ଗଞ୍ଜାମ        ତା ୧-୨-୧୯୧୭ ମସିହା

ପ୍ରିୟ ମହାଶୟ !

ସୁଦୀର୍ଘ କାଳ ହେଲା ଆପଣଙ୍କର ସାକ୍ଷାତ-ଲାଭରୁ ବଞ୍ଚତ । ନକଟରେ ସାକ୍ଷାତର ସମ୍ଭାବନା ନାହିଁ । ଅନେକ ଦନ ହେଲା ଆପଣଙ୍କର କୌଣସି ସମାଚାର ପାଇ ନାହିଁ । ଅଭଧାନ-ଲଖନ-ବାସନା 'ଉତ୍ଥାୟ ହୃଦଲୀୟନ୍ତେ'

ହେଲ ପ୍ରାପ୍ତ ! ସ୍ଥାୟୀ ହୋଇ ରହିବା ଭଳି ଖଣ୍ଡେ ପୁସ୍ତକ ଓଡ଼ିଆଜାତିକୁ, ଉତ୍କଳ-ସାହିତ୍ୟ ଭଣ୍ଡାରକୁ ପ୍ରଦାନ କରିବା ଦ୍ୱାରା ଆପଣାର ଦୃଢ ଚହ୍ନ ରକ୍ଷା କରନ୍ତୁ, ଆପଣଙ୍କୁ ଏହି ପ୍ରାର୍ଥନା କରୁଅଛୁ । ବର୍ତ୍ତମାନ ମୁଁ ଏକପ୍ରକାର ସୁଖ-ଦୁଃଖରେ କାଳଯାପନ କରୁଅଛୁ । ସମସ୍ତ ସମୟରେ ସ୍ମାରକ ଲିପି ପଠାଇ ଅନୁଗୃହୀତ କରାଇବା ହେଉଥିବେ । ଯପନ୍ତ ଗାସ୍ତୁକରହ୍ନଙ୍କର ଭକ୍ତିପୂର୍ଣ୍ଣ ନମସ୍କାର ଗ୍ରହଣ କରନ୍ତୁ ।

ଆପଣଙ୍କ ସ୍ନେହାଧୀନ
ଶ୍ରୀ ନୀଳମଣି ବିଦ୍ୟାରତ୍ନ

To,

Babu Chandramohan Maharana,
Headmaster, Cuttack Training School,
P.O. : Chandinichauk, Dist Cuttack

———